# କୀଟନାଶକ ଛାଡ଼ନ୍ତୁ! ନିରନ୍ତର ଦୁନିଆ ଗଢ଼ନ୍ତୁ



ସିପାକ୍ - ଗୋଷ୍ଠୀ କୀଟନାଶକ ପଦକ୍ଷେପ ପେଟିକା

ସ୍ଥାନୀୟ ପଦକ୍ଷେପ ଯୋଜନା।

# ସୂଚୀପତ୍ର

# ମୁଖବନ୍ଧ

ଏସିଆର ଗ୍ରାମ୍ୟ ଗୋଷ୍ଠୀମାନଙ୍କୁ କୀଟନାଶକ ଯୋଗୁ ଆସୁଥିବା ବିଭିନ୍ନ ସମସ୍ୟା ବିଷୟରେ ଜଣାଇବା ପାଇଁ ଏହି ଗୋଷ୍ଠୀ କୀଟନାଶକ ପଦକ୍ଷେପ ପେଟିକା ବା *ସିପାକ୍* ପ୍ରସ୍ତୁତ କରାଯାଇଛି । ଆହୁରି ମଧ୍ୟ ସାମୁହିକ ଭାବରେ ଏହି ବିଷୟରେ ଆଲୋଚନା କରିବା ଦିଗରେ ସେମାନଙ୍କୁ ଉତ୍ସାହିତ କରିବା ହେଉଛି ଏହାର ଆଉ ଗୋଟିଏ ଲକ୍ଷ୍ୟ । ନାଗରିକ ଦଳ ଓ ଜନ ସଂଗଠନର ଗୋଟିଏ ଏସିଆନ ଦଳ ଦ୍ୱାରା *ସିପାକ୍* ପ୍ରସ୍ତୁତ ହୋଇଛି ।

- ମାଲେସିଆର *ପେଷ୍ଟିସାଇଡ୍ ଆକ୍ସନ ନେଟୱର୍କ ଏସିଆ ଆଣ୍ଡ ପାସିଫିକ୍*
- *ଗିଟା ପେର୍‌ଟିଡ଼ି*, ଇଣ୍ଡୋନେସିଆ
- *ପେଷ୍ଟିସାଇଡ୍ ନେଟୱର୍କ ଫିଲିପାଇନ୍‌ସ*, ଫିଲିପାଇନ୍‌ସ
- *ଟେନାଗନିଟା*, ମାଲେସିଆ

ସମସ୍ୟାର ବିଭିନ୍ନ ଦିଗକୁ ଛୁଇଁବା ପାଇଁ ୯ଟି ପେଟିକା ପ୍ରସ୍ତୁତ କରାଯାଇଛି:

- ଚେତାବନୀ! କୀଟନାଶକ ଆପଣଙ୍କ ସ୍ୱାସ୍ଥ୍ୟ ପ୍ରତି ବିପଦ
- ନିରବତା ଛାଡ଼ନ୍ତୁ: ବୃକ୍ଷରୋପଣରେ କୀଟନାଶକ
- ବିଷରୁ ଲାଭ: କୀଟନାଶକ ଶିଳ୍ପ
- କୀଟନାଶକ ଛାଡ଼! ଗୋଟିଏ ନିରନ୍ତର ଦୁନିଆ ଗଢ଼
- କୀଟନାଶକ ଆମ ପୃଥିବୀକୁ ଧ୍ୱଂସ କରେ
- ଧ୍ୟାନ ରଖନ୍ତୁ: କୀଟନାଶକ ନିୟମ
- କୀଟନାଶକ ଦୂରେଇବା କିପରି: ଗୋଷ୍ଠୀ ସଂଗଠନ
- ବିଷକୁ ଖୋଜି ବାହାର କର: ଗୋଷ୍ଠୀ ନିରୀକ୍ଷଣ ସହାୟକ

ଏଭଳି ଆହୁରି କିଛି ପେଟିକା ଆଗକୁ ବାହାରିବାର ଯୋଜନା ରହିଛି । ଏହି ପେଟିକାଗୁଡ଼ିକ ନିଜେ ନିଜେ ସ୍ୱୟଂସମ୍ପୂର୍ଣ୍ଣ ନୁହନ୍ତି । ସ୍ଥାନୀୟ ଭାଷାରେ ଆହୁରି କେତେ ସାମଗ୍ରୀ ଏଥିରେ ଯୋଡ଼ାହେବା ଜରୁରୀ । ଆପଣ ତଳର ତାଲିକା ଭଳି କିଛି ପରିପୂରକ ସାମଗ୍ରୀ ଯୋଡ଼ିପାରିବେ:

| | |
|---|---|
| ବ୍ୟଙ୍ଗଚିତ୍ର | କଣ୍ଢେଇ |
| ନାଟକ | ବେତାର ବାର୍ତ୍ତା |
| ଖେଳ | ସ୍ଲାଇଡ୍ |
| ଫଟୋଚିତ୍ର | ଷ୍ଟିକର |
| ପୋଷ୍ଟର/ଚିତ୍ରମାଳା | ଭିଡିଓ |

ଆଖପାଖରୁ ଖୋଜି ଉପଯୁକ୍ତ ଜିନିଷ ବାହାର କରନ୍ତୁ । ଏଥିରୁ ଅନେକଗୁଡ଼ିଏ ଗୋଷ୍ଠୀ ଦ୍ୱାରା ମଧ୍ୟ ତିଆରି କରାଯାଇ ପାରିବ । ଦିଗ୍‌ଦର୍ଶନ ପାଇଁ ଆପଣ *ପେଷ୍ଟିସାଇଡ୍ ଆକ୍ସନ ନେଟ୍‌ୱର୍କ ଏସିଆ ଆଣ୍ଡ ପେସିଫିକ୍ (ପାନ୍ ଆପ୍)* ସହ ଯୋଗାଯୋଗ କରି ପାରିବେ ।

ପେଟିକା ସମ୍ପର୍କରେ ଆପଣଙ୍କର ମତାମତ ପାଇଲେ ଏବଂ ଆପଣ ପେଟିକାର କିପରି ବ୍ୟବହାର କଲେ ତାହା ଜାଣିଲେ *ପାନ୍ ଆପ୍* ଖୁସୀ ହେବ । ଆସନ୍ତୁ, ପୃଥିବୀକୁ ବିଷାକ୍ତ କୀଟନାଶକ କବଳରୁ ମୁକ୍ତ କରିବା ପାଇଁ ଏକାଠି ମିଶି କାମକରିବା ।

## କୃତଜ୍ଞତା

ଏହି ପେଟିକାର ପ୍ରକାଶନ ପାଇଁ ସହାୟତା ଯୋଗାଇଛନ୍ତି:

- ଏସିଆନ, କାନାଡା
- କୁସୋ, କାନାଡା,
- ଇଇଡି, ଜର୍ମାନୀ
- ହିଭୋସ୍, ହଲାଣ୍ଡ
- ନୋଭିବ୍, ହଲାଣ୍ଡ

ଏହି ପ୍ରକାଶନ ପାଇଁ ତଥ୍ୟ ଅନେକ ଉତ୍ସରୁ ଆସିଛି । ଏହାର ମୁଖ୍ୟ ଆଧାର ହେଉଛି ଆନ୍ତର୍ଜାତିକ ଗ୍ରାମ୍ୟ ପୁନର୍ଗଠନ ପ୍ରତିଷ୍ଠାନ (ଆଇ.ଆଇ.ଆର୍.ଆର୍.), ସିଲାଙ୍ଗ, କାଭିଟେ, ଫିଲିପାଇନସ୍, ଦ୍ୱାରା ପ୍ରକାଶିତ ନିରନ୍ତର କୃଷି ବିଷୟରେ ବିଭିନ୍ନ ସାଧନ ପୁସ୍ତିକା । ସେଥିପାଇଁ ତାଙ୍କୁ ଆମର ବିଶେଷ ଧନ୍ୟବାଦ ।

ମୁଖ୍ୟ ଲେଖକ: ଗ୍ରେଗ୍ ଷ୍ଟଙ୍ଗ ଏବଂ ଓଙ୍ଗ କୁଙ୍ଗ ୱାଇ

ସମ୍ପାଦନା: ରୋନାଲ୍ଡ୍ ମାକ୍‌ଫାର୍ଲେନ୍ ଏବଂ ରେବତୀ ରାମଚନ୍ଦ୍ରନ

ସମ୍ପାଦନା ମଣ୍ଡଳୀ: ଜେୟାମାରୀ ଏମ୍. ଆଣ୍ଟୋନୀ, ଇରିନ୍ ଫର୍ଣ୍ଣାଣ୍ଡେଜ୍, ରୋମିଓ କ୍ୱିଜାନୋ, ଲିନ୍ ରିଡୋବଲ୍, ସରୋଜେନୀ ଭି. ରେଙ୍ଗାମ୍, ବେଟି ଷ୍ଟିଭେନ୍, ଆଗସ୍ ସୁଗିଆର୍ଟୋଟୋ, ଲୋଲିଟ୍ ସୁପ୍ଲିଡୋ, ଓର୍ସୋନୋ ଜେନିଫର୍ ମଉରିନ୍, ମୋନିକା ପି. ଏମାନୁଏଲ୍, ଜୁମାଟ୍ ମାଜିଦ୍ ଏବଂ ମୋଇ କୋକ୍ ଚି

ଅଙ୍ଗସଜ୍ଜା ଓ ପରିଯୋଜନା: ୟାନେସ୍ ଗୋଭିନ୍ଦରାଜ

ଚିତ୍ର: ଆଲାନ୍ ଉଙ୍ଗ

ପ୍ରକାଶନ: *ପେଷ୍ଟିସାଇଡ୍ ଆକ୍ସନ ନେଟୱର୍କ ଏସିଆ ଆଣ୍ଡ ପାସିଫିକ୍* (ପାନ୍ ଆପ୍)

ପେନାଙ୍ଗ, ଡିସେମ୍ବର ୨୦୦୧

### ଓଡ଼ିଆ ସଂସ୍କରଣ

ଭାଷାନ୍ତର ଓ ପ୍ରାକ୍-ମୁଦ୍ରଣ ପ୍ରସ୍ତୁତି: ଜୀବନ କୁମାର ପଣ୍ଡା, ପୁଷ୍ପଶ୍ରୀ ପଟ୍ଟନାୟକ ଏବଂ ସୃଜନିକା କର୍ମୀଦଳ

ପ୍ରକାଶନ: ଲିଭିଙ୍ଗ ଫାର୍ମସ୍/ଡିଆର୍‌ସିଏସ୍‌ସି - ଭୁବନେଶ୍ୱର, ପ୍ଲଟ୍ ନଂ-୧୧୮୧/୨୧୪୬, ରତ୍ନାକରବାଗ-୨,
ଟଙ୍କପାଣିରୋଡ୍, ଭୁବନେଶ୍ୱର - ୭୫୧ ୦୧୮, ଦୂରଭାଷ: (୦୬୭୪) ୨୪୩୦୧୭୬

ପ୍ରଥମ ସଂସ୍କରଣ: ଅକ୍ଟୋବର ୨୦୦୭

**ମୂଲ୍ୟ: ୬୫.୦୦**

ସହାୟତା: ପାନ୍ ଆପ୍ ଓ ଆକ୍ସନ୍ ଏଡ୍

ନୋଟ୍: ଏହି ପେଟିକାଟି କାମ ଚାଲିଥିବା ଅବସ୍ଥାରେ ଅଛି । ପରିମାର୍ଜନା ପାଇଁ ଦରକାରୀ ମତାମତ ପାଇବା ପାଇଁ ଏହାର କ୍ଷେତ୍ରୀୟ ମୂଲ୍ୟାୟନ ଏବେ ଚାଲିଛି । ଏହି ପେଟିକା ଉପରେ ସବୁପ୍ରକାର ମତାମତ ସ୍ୱାଗତଯୋଗ୍ୟ ।
ଦୟାକରି ଆପଣଙ୍କ ମତାମତ ଲେଖି ଜଣାନ୍ତୁ:

ପେଷ୍ଟିସାଇଡ୍ ଆକ୍ସନ ନେଟ୍‌ୱର୍କ ଏସିଆ ଆଣ୍ଡ୍ ପାସିଫିକ୍ (ପାନ୍ ଆପ୍)
ପୋଷ୍ଟବକ୍ସ ୧୧୭୦, ୧୦୮୫୦ ପେନାଙ୍ଗ, ମାଲେସିଆ, ଦୂରଭାଷ: (୬୦୪) ୬୫୭୦୨୭୧/ ୬୫୬୦୩୮୧
ଫାକ୍ସ : (୬୦୪) ୬୫୭୭୪୪୫, ଇମେଲ୍ : panap@panap.net

# ତଥାପି ବିକଳ୍ପ ଅଛି

**ଅଧିକ କୀଟନାଶକ, ଅଧିକ କୀଟ**

ଅନେକ ଚାଷୀଙ୍କୁ ମନେହୁଏ ଯେ କେତେକ ଫସଲ କୀଟ ଚାଲାକ ଓ ଟାଣୁଆ ରୂପ ନେଉଛନ୍ତି । ପ୍ରଚୁର କୀଟନାଶକ ବ୍ୟବହାର କଲେ ମଧ୍ୟ ନୂଆ କୀଟ ବା ଅଧିକ ସହନଶୀଳ ପୁରୁଣା କୀଟ ସେମାନଙ୍କ ଫସଲକୁ ଛାରକାର କରି ଦେଉଛନ୍ତି ।

ଅନେକ ଚାଷୀ ତଥା ଗୋଷ୍ଠୀ ବୁଝିପାରିଲେଣି ଯେ ଅତ୍ୟଧିକ ବିଷାକ୍ତ କୀଟନାଶକର ବ୍ୟବହାର ସ୍ଥାନୀୟ ପରିବେଶ ଓ ଜନଜୀବନକୁ ନଷ୍ଟ କରୁଛି ।

ଏସିଆ-ପ୍ରଶାନ୍ତ ମହାସାଗର ଅଞ୍ଚଳର କୃଷକମାନେ ବିଦେଶୀ କମ୍ପାନୀଙ୍କଠାରୁ ସେମାନଙ୍କ ବିହନ କିଣିବାକୁ ବାଧ୍ୟ ହେଉଛନ୍ତି । ସେହି କମ୍ପାନୀମାନେ କେବଳ ଲାଭକୁ ଆଖିରେ ରଖି ବେପାର କରୁଥିବାରୁ ଧୀରେ ଧୀରେ କୃଷକଙ୍କ ରୋଷ ବଢ଼ିବାରେ ଲାଗିଛି । କୃଷକଙ୍କର ଅଧିକାଂଶ ଫସଲ ରପ୍ତାନି ଲକ୍ଷ୍ୟରେ କରାଯାଏ । ସେହି ଫସଲର ମୂଲ୍ୟ ବିଦେଶୀ ବଜାର ନିର୍ଦ୍ଧାରଣ କରୁଥିବାରୁ ତାହା ଚାଷୀମାନଙ୍କର ବିରକ୍ତିର କାରଣ ହୁଏ । ଚାଷ ପାଇଁ ଆବଶ୍ୟକ ରାସାୟନିକ କିଣିବା ପାଇଁ ସେମାନଙ୍କୁ ମୋଟା ଅଙ୍କର ଅର୍ଥ କରଜ କରିବାକୁ ପଡ଼ୁଛି । ଫଳରେ ସେମାନେ ମହାଜନ ପାଖରେ ଋଣୀ ହୋଇ ରହୁଛନ୍ତି କିମ୍ବା କମ୍ ଅମଳର ଶିକାର ହେଉଛନ୍ତି ।

'ସବୁଜ ବିପ୍ଳବ'ର ଚାଷ ପ୍ରଣାଳୀ ମୂଳଧନ ଓ ଯନ୍ତ୍ରପାତି ସହଜରେ ପାଇପାରୁଥିବା ବଡ଼ ଫାର୍ମ ଓ ଧନୀମାଲିକଙ୍କ ପାଇଁ ସହଜ । କିନ୍ତୁ ସାଧାରଣ ଚାଷୀଙ୍କ ପାଇଁ ବା ଛୋଟ କୃଷକ ଗୋଷ୍ଠୀ ପାଇଁ ଏହା ଅତ୍ୟଧିକ କଷ୍ଟକର ହେଉଛି । ଏହା ମଧ୍ୟ ଚାଷୀଙ୍କ ଧୈର୍ଯ୍ୟଚ୍ୟୁତି ଓ ବିରକ୍ତିର କାରଣ ।

**ଅଳ୍ପ ବା ବିନା ରସାୟନ ବ୍ୟବହାରରେ ଚାଷ ମଧ୍ୟ ଲାଭଦାୟକ ହୋଇପାରେ**

ଏସିଆ ଓ ପ୍ରଶାନ୍ତ ମହାସାଗର ଅଞ୍ଚଳ (ଏବଂ ସାରା ପୃଥିବୀ)ରେ ଅଧିକାଂଶ ଚାଷୀ ଅଳ୍ପ ବା ବିନା ରସାୟନର ବ୍ୟବହାର କରି ଚାଷ କରିବା ଆଡ଼କୁ ମୁହାଁଉଛନ୍ତି । ସେମାନେ ସମନ୍ୱିତ କୀଟ ସଂଚାଳନା ବା ଜୈବିକ କୃଷି ଭଳି ଧାରାକୁ ଆଦରି ନେଉଛନ୍ତି । ଏହି ବାଟରେ ସେମାନେ ନିଜର ସ୍ୱାସ୍ଥ୍ୟ ଓ ପରିବେଶକୁ ସୁରକ୍ଷିତ ରଖିବା ସହ ଲାଭ ମଧ୍ୟ ପାଇପାରୁଛନ୍ତି । ଏହା ସହ ସେମାନଙ୍କୁ ଅନ୍ୟ କାହାଠାରୁ ଧାର କରଜ ଉପରେ ନିର୍ଭର କରିବାକୁ ପଡ଼ୁନାହିଁ ।

ଅଧିକରୁ ଅଧିକ ଖାଉଟି ମଧ୍ୟ ଜାଣିଲେଣି ଯେ, ସାମାନ୍ୟ ବିଷ ଲାଗିଥିବା ଖାଦ୍ୟ ପଦାର୍ଥ ଖାଇବା ମଧ୍ୟ ବିପଦଜନକ । ସେମାନେ ନିରାପଦ ଖାଦ୍ୟ ପାଇଁ ଅଧିକ ଦାମ ଦେବାକୁ ଏବେ ପ୍ରସ୍ତୁତ ହେଲେଣି । ଏହା ଫଳରେ ଛୋଟ ଚାଷୀମାନେ ସମାଜର ଏକ ସକ୍ରିୟ ଅଙ୍ଗ ହୋଇ ରହିପାରୁଛନ୍ତି ।



**ନିରନ୍ତର ବିକଳ୍ପ କୀଟ ସଂଚାଳନା ବିଷୟରେ ଆପଣ ଜାଣନ୍ତି କି?**

ହଜାର ହଜାର ବର୍ଷର ସ୍ଥାନୀୟ ଜ୍ଞାନ ଓ ଅଭିଜ୍ଞତାକୁ ଆଧାର କରି କୀଟ ସଂଚାଳନା ପାଇଁ ଅନେକ ବାଟ ରହିଛି । ଏହି ବିକଳ୍ପ ଧାରାଗୁଡ଼ିକ ନିରାପଦ, ପ୍ରମାଣିତ ଓ ଲାଭଦାୟକ ହେଲେ ମଧ୍ୟ ଅନେକ ଚାଷୀ ଏହି କଥାକୁ ହୃଦୟଙ୍ଗମ କରି ନାହାନ୍ତି ।

ଏଭଳି ବିକଳ୍ପ କୀଟ ସଂଚାଳନା ବିଷୟରେ ଶିଖିବା ଶିଖାଇବା ପାଇଁ ସ୍ୱତନ୍ତ୍ର ଧାରା ମାନ ବିକଶିତ ହୋଇଛି । ତାହା ସାହାଯ୍ୟରେ ନିଜ ଜମି ବା ପରିବାରକୁ କୌଣସି ବିପଦରେ ନପକାଇ ଚାଷୀ ଧୀରେ ଧୀରେ ବିକଳ୍ପ ବ୍ୟବସ୍ଥାକୁ ପରଖି ପାରିବ । କିନ୍ତୁ ତାହା ବିଷୟରେ ଅନେକ ଲୋକ ଜାଣିପାରି ନାହାନ୍ତି ।

କେତେକ କୀଟ ସଂଚାଳନା ଧାରାରେ ବିଷାକ୍ତ ରାସାୟନିକ ବ୍ୟବହାର ହୁଏ ନାହିଁ । ଆଉ କେତେ ଧାରାରେ କମ ପରିମାଣର ରାସାୟନିକ ବ୍ୟବହାର ହୁଏ । ଆମ ପରିବେଶକୁ ଏବଂ ଦେହକୁ କମ୍ ରାସାୟନିକ ବିଷ ଛାଡ଼ୁଥିବା ବ୍ୟବସ୍ଥା ସବୁଠାରୁ ବେଶୀ ଗ୍ରହଣୀୟ ।



**ଆମେ ଏହି ସବୁ ବିକଳ୍ପ ମାଧ୍ୟମକୁ କାହିଁକି ଜାଣିବା ନାହିଁ?**

ଧୀରେ ଧୀରେ ଅଧିକ ସଂଖ୍ୟାର ଚାଷୀ ଏବଂ ସରକାର ମଧ୍ୟ ଏବେ କୀଟନାଶକର ବିକଳ୍ପ ବିଷୟରେ ଜାଣିଲେଣି । କୀଟନାଶକ ଏବଂ କୃତ୍ରିମ ସାରର କମ ବ୍ୟବହାର ଯେ ଲାଭଦାୟକ ଓ ଯୁକ୍ତିଯୁକ୍ତ ସେକଥା ଅଧିକାଂଶ ଲୋକ ଗ୍ରହଣ କଲେଣି । ସ୍ୱାସ୍ଥ୍ୟ ଓ ପରିବେଶ ପ୍ରତି ଆସୁଥିବା ବିପଦ ଯୋଗୁଁ ଏହି ସଚେତନତା କିଛି ମାତ୍ରାରେ ବଢ଼ିଛି । ଆହୁରି ମଧ୍ୟ କୀଟନାଶକ ବ୍ୟବହାର ଫଳରେ ପୁରୁଣା କୀଟ ପ୍ରତିରୋଧୀ ହେଉଥିବା ଏବଂ ନୂଆ କୀଟ ଆସୁଥିବା କଥା ଏବେ ଜଣା ପଡ଼ୁଛି । ତେଣୁ କୀଟନାଶକ ଉପରେ ପୂରା ଭରସା କରିହେବ ନାହିଁ ବୋଲି ଲୋକମାନେ ବୁଝୁଛନ୍ତି । ଫଳରେ ଅନେକ ଦେଶରେ ବିକଳ୍ପ ବ୍ୟବସ୍ଥାର ଜ୍ଞାନକୌଶଳ ଆଦାନପ୍ରଦାନ ହେଉଛି ।

କିନ୍ତୁ କୀଟନାଶକ ଶିଳ୍ପର ବଡ଼ ବଡ଼ କମ୍ପାନୀମାନେ ଚାହାନ୍ତି ନାହିଁ ଯେ ଲୋକମାନେ ଏ ବିଷୟରେ ଜାଣନ୍ତୁ । ସେମାନେ ଚାହାନ୍ତି ଯେ ସମସ୍ତେ କେବଳ କୀଟନାଶକ ଉପରେ ବିଶ୍ୱାସ ରଖନ୍ତୁ । ତାଙ୍କର କ୍ଷମତାକୁ ବ୍ୟବହାର କରି ବିଭିନ୍ନ ଦେଶର କୃଷିନୀତି ଉପରେ ପ୍ରଭାବ ପକାଇବାକୁ ଚେଷ୍ଟା କରୁଛନ୍ତି । ଏହି ବାଟରେ ସେମାନେ ଲାଭ ପାଇବା ଜାରି ରଖିପାରିବେ ।



## କିପରି ଆରମ୍ଭ କରିବେ ?

ପର ପୃଷ୍ଠାଗୁଡ଼ିକରେ ଚାଷୀଙ୍କ ଭିତରେ ବାଣ୍ଟିବା ପାଇଁ କେତେଗୁଡ଼ିଏ ଧାରଣା ଦିଆଯାଇଛି । ଆପଣମାନେ ହୁଏତ ଏଭଳି କିଛି ଚିନ୍ତା କାମରେ ଲଗାଉଥିବେ ବା ସେ ବିଷୟରେ ଜାଣିଥିବେ ।

ଏହି ଛୋଟ ପୁସ୍ତିକାଟି କେବେ ବି ସବୁ କଥା ଶିଖାଇ ପାରିବ ନାହିଁ । ନିଜ ଜମିରେ ଏସବୁକୁ କାମରେ ଲଗାଇ ଅଭିଜ୍ଞତାରୁ ଶିଖିବାକୁ ପଡ଼ିବ; କେବଳ ଖଣ୍ଡିଏ ବହିରୁ ନୁହେଁ । ଏହି ବହିର କିଛି ଧାରଣା ଯଦି ଆପଣଙ୍କୁ ଭଲ ମନେହୁଏ, ତେବେ ଆଖ ପାଖରେ ଏ ବିଷୟରେ ପଚାରନ୍ତୁ । ପାଖର କେହି ଚାଷୀ ହୁଏତ ଏହାକୁ ବ୍ୟବହାର କରୁଥାଇ ପାରନ୍ତି । କୌଣସି ସରକାରୀ ବା ବେସରକାରୀ ଅନୁଷ୍ଠାନ ଆପଣଙ୍କୁ ଏ ଦିଗରେ ସାହାଯ୍ୟ କରିପାରନ୍ତି ।





**ପଦକ୍ଷେପ ପାଇଁ।**

ଏହି ବହିରେ ଦିଆଯାଇଥିବା ପ୍ରମାଣିତ କୌଶଳ ବିଷୟରେ ଅଧିକ ଜାଣିବାକୁ ଆଗ୍ରହୀ କି ? ତେବେ ଜଣେ ଚାଷୀ ବା ସଂପ୍ରସାରଣ ଅଧିକାରୀଙ୍କୁ ସାହାଯ୍ୟ ମାଗନ୍ତୁ । ପରୀକ୍ଷାମୂଳକ ଭାବରେ ଏସବୁର ପ୍ରୟୋଗ ଆରମ୍ଭ କରିବାର ବାଟ ସେମାନେ ଦେଖାଇ ପାରିବେ । ଏହା ପରେ ଆପଣ ନିଜେ ନିଜେ ଆଗେଇ ପାରିବେ ।

# ପୁରୁଣା ବାଟ ଉଦ୍ଧାର, ନୂଆବାଟ ଶିକ୍ଷା

**ଚାଷୀମାନେ ପାରମ୍ପରିକ ଚାଷ ଜ୍ଞାନ ଓ କୌଶଳ ହରାଇ ଚାଲିଛନ୍ତି**

ପୃଥିବୀର ଅଧିକାଂଶ ଅଞ୍ଚଳରେ ଏବେ ଗୋଟିଏ ନୂଆ ପିଢ଼ିର ଚାଷୀ ଆସିଛନ୍ତି । ସବୁଜ ବିପ୍ଳବର ପୂର୍ବପ୍ରସ୍ତୁତ କୃଷି ବ୍ୟବସ୍ଥା ବ୍ୟବହାର କରିବା ପାଇଁ ତାଙ୍କୁ ମୂଳରୁ ଶିଖାଯାଇଛି । ଯଦିଓ ଏଥିପାଇଁ ତାଙ୍କୁ ବିଦେଶୀ କମ୍ପାନୀର ବିହନ ଉପରେ ନିର୍ଭର କରିବାକୁ ପଡ଼ୁଛି ।

ଏହାର ଗୋଟିଏ ଦୁର୍ଭାଗ୍ୟଜନକ ଦିଗ ରହିଛି । ତାହା ହେଉଛି ପାରମ୍ପରିକ କୃଷି ଓ ପ୍ରାକୃତିକ ଜ୍ଞାନର ଚମତ୍କାର ସମ୍ପଦର ଭଣ୍ଡାର ନଷ୍ଟ ହୋଇଯିବାର ଆଶଙ୍କା । ପୁରୁଣା ଦିନରେ ପ୍ରାକୃତିକ ଖାଦକ, କୀଟର ଜୀବନ ଚକ୍ର, ସହଯୋଗୀ ଉଦ୍ଭିଦ, ମାଟିର ଉର୍ବରତା ଏବଂ ଅନ୍ତର୍ବର୍ତ୍ତୀ ଫସଲ ବିଷୟରେ ଯଥେଷ୍ଟ ଜ୍ଞାନ ଥିଲା । କିନ୍ତୁ ବର୍ତ୍ତମାନର ନିୟମିତ ଚାଷରେ ଏହାର ସ୍ଥାନ ନାହିଁ ।

ବିପଦଜନକ ରସାୟନିକ ଉପରୁ ଆମ ଭରସା କମାଇବାକୁ ହେଲେ ଏହି ପୁରୁଣା ଜ୍ଞାନ ଉପରେ ପୁଣି ନିର୍ଭର କରିବାକୁ ହେବ । ନିଜ ଗୋଷ୍ଠୀ ଭିତରେ ହିଁ ଏହା ଆପଣଙ୍କୁ ଆରମ୍ଭ କରିବାକୁ ପଡ଼ିବ । ସେଥିପାଇଁ ପୁରୁଖା ଲୋକଙ୍କ ଅନୁଭୂତି ଓ ଜ୍ଞାନର ସାହାଯ୍ୟ ନେବାକୁ ହେବ ଏବଂ ନିଜର ଜମି ଓ ସ୍ଥାନୀୟ ପରିବେଶକୁ ଲକ୍ଷ୍ୟ କରିବାକୁ ପଡ଼ିବ ।

**ପୁରୁଣା ବାଟ କାମ କରୁଥିଲା**

ହଜାର ହଜାର ବର୍ଷ ଧରି ଚାଷୀମାନେ ପ୍ରାକୃତିକ କୀଟ ସଂଚାଳନ ବ୍ୟବସ୍ଥାର ଉପଯୋଗ କରି ସମୃଦ୍ଧଶାଳୀ ହୋଇପାରିଥିଲେ ।

ମଣିଷ ଓ ପରିବେଶ ଅଧିକ ସୁସ୍ଥ ଥିଲେ ।

କୃଷକ ଗୋଷ୍ଠୀ ବିଦେଶୀ ବିହନ ବା ବିଦେଶୀ ବଜାର ଉପରେ ନିର୍ଭର କରିବାକୁ ବାଧ୍ୟ ହେଉନଥିଲେ ।

ଚାଷ କାମ ଗୋଷ୍ଠୀ ଜୀବନ ଓ ସଂସ୍କୃତିର କେନ୍ଦ୍ର ଥିଲା ।

ମାଟି, କୀଟ, ଜୀବଜନ୍ତୁ ଓ ଉଦ୍ଭିଦ ଚାଷୀର ଉତ୍ତମ ବନ୍ଧୁ ହୋଇ ରହିଥିଲେ ।





**କୀଟନାଶକ ବ୍ୟବହାର କମାଇବାର ବାଟ ଅଛି**

କୀଟନାଶକ ବ୍ୟବହାର କମାଇବାର ଗୋଟିଏ ବାଟ ହେଉଛି ଜୈବିକ କୃଷି । ଜୈବିକ କୃଷି ପ୍ରକୃତିର ସନ୍ତୁଳନ ରକ୍ଷାକରିବା ଉପରେ ଏବଂ ପ୍ରାକୃତିକ ଉପାଦାନର ବ୍ୟବହାର ଉପରେ ଗୁରୁତ୍ୱ ଦେଇଥାଏ । ସେଥିପାଇଁ ତାହା ଜୈବିକ ବା ଉଦ୍ଭିଦଜ କୀଟନାଶକ ଏବଂ ଖତସାର ବ୍ୟବହାର ଉପରେ ଅଧିକ ନିର୍ଭର କରିଥାଏ । ଜୈବିକ କୃଷି ସଂପର୍କୀୟ କୌଶଳ ବିଷୟରେ ଅଧ୍ୟାୟ ୩, ୪ ଓ ୫ରେ ବର୍ଣ୍ଣନା କରାଯାଇଛି ।

ସମନ୍ୱିତ କୀଟ ସଂଚାଳନ ବା ଆଇପିଏମ୍ ବ୍ୟବସ୍ଥାର ଉପଯୋଗ ମଧ୍ୟ କୀଟନାଶକ ବ୍ୟବହାର କମାଇବାର ଆଉ ଗୋଟିଏ ବାଟ । ଏହାଛଡ଼ା ଆହୁରି ଅନେକ ବାଟ ରହିଛି । କମ୍ ବାହ୍ୟ ଉପାଦାନ ଉପରେ ନିର୍ଭର କରୁଥିବା ନିରନ୍ତର କୃଷି ବ୍ୟବସ୍ଥା *ଲେଇସା ବା ଲିସା* ଏହାର ଗୋଟିଏ ଉଦାହରଣ । ଏହି ବ୍ୟବସ୍ଥାରେ ଖୁବ୍ ଅଳ୍ପ ପରିମାଣର ରାସାୟନିକ ସାର, କୀଟନାଶକ ଏବଂ ଯନ୍ତ୍ରପାତି ଭଳି 'ବାହ୍ୟ ଉପାଦାନ' ଆବଶ୍ୟକ ହୋଇଥାଏ ।

ବିକଳ୍ପ କୃଷି ବ୍ୟବସ୍ଥାରେ ବହୁ ବିବିଧତା ରହିଛି ଏବଂ ଲୋକମାନେ ଏଥିପାଇଁ ବିଭିନ୍ନ ନାମ ଉପଯୋଗ କରିଥାନ୍ତି । ଏଭଳି ନାମରୁ କିଛି ହେଉଛି –

- କ୍ଷେତଜଙ୍ଗଲ ଓ ବୀଥୀ ଫସଲ
- ଜୈବସକ୍ରିୟ କୃଷି
- ପରିବେଶୀୟ ଚାଷ
- ପ୍ରାକୃତିକ ଚାଷ
- ସ୍ଥାୟୀ ଚାଷ

ଏହି ଧାରାଗୁଡ଼ିକ ଭିତରେ ଅଳ୍ପ କିଛି କିଛି ପ୍ରଭେଦ ରହିଛି । କିନ୍ତୁ ସବୁର ଲକ୍ଷ୍ୟ ହେଉଛି ଚାଷକୁ ମଣିଷ ତଥା ପରିବେଶ ପ୍ରତି ସହାୟକ କରିବା ସହ ଅଧିକ ନିରନ୍ତର କରିବା ।

ଚାଷର ଅଧିକାଂଶ ପାରମ୍ପରିକ ଧାରା ହେଉଛି ଚିରନ୍ତନ କୃଷିର ରୂପ ।

ବିକଳ୍ପ ଚାଷ କେବଳ ପାରମ୍ପରିକ ବାଟରେ ଚାଷ କରିବା ନୁହେଁ । ଏହା ହେଉଛି ଦେଶୀୟ ଜ୍ଞାନ ଓ ବର୍ଷ ବର୍ଷର ଅଭିଜ୍ଞତା ଓ ପ୍ରୟୋଗରୁ ଆସିଥିବା ସ୍ଥାନୀୟ ପ୍ରଜ୍ଞା ଆଦିକୁ କାମରେ ଲଗାଇ ଉନ୍ନତ ହେବା ।





**କୌଣସି ଯାଦୁ ତୀର ନାହିଁ**

ଚାଷୀଙ୍କର କୀଟ ସମସ୍ୟାର ସମାଧାନ ପାଇଁ କୀଟନାଶକକୁ 'ଯାଦୁ ତୀର' ଭାବରେ ବର୍ଣ୍ଣନା କରାଯାଇଥାଏ । କିନ୍ତୁ ବିଭିନ୍ନ ପରିସ୍ଥିତିରେ ଆମେ ଦେଖିଛେ ଯେ ସେଗୁଡ଼ିକ ପ୍ରତିଶ୍ରୁତି ଅନୁଯାୟୀ କାମ କରନ୍ତି ନାହିଁ ।

ବିକଳ୍ପ କୀଟ ସଂଚାଳନ ବିଷୟରେ ଚିନ୍ତା କଲାବେଳେ କେବଳ ସେହି ଗୋଟିଏ କଥା ପ୍ରତି ଦୃଷ୍ଟି ଦିଆଯାଏ ନାହିଁ । ବରଂ ସମ୍ପୂର୍ଣ୍ଣ ଚାଷ ବ୍ୟବସ୍ଥାକୁ ସାମଗ୍ରିକ ଭାବରେ ଦେଖିବାକୁ ହୁଏ ।

ଉଦାହରଣ ସ୍ୱରୂପ, ସୁସ୍ଥ ଉଦ୍ଭିଦ କୀଟ ଆକ୍ରମଣରୁ ନିଜକୁ ରକ୍ଷା କରିପାରେ ବା ରୋଗ ସହ ଭଲ ଭାବରେ ଲଢ଼ିପାରେ । ତେଣୁ ମାଟିକୁ ଉର୍ବର ଓ ସୁସ୍ଥ ରଖିବା କୀଟ ଓ ରୋଗ ସହ ଲଢ଼ିବାର ଗୋଟିଏ ବାଟ ।

ଅନ୍ୟ ବାଟଟି ହେଉଛି କୀଟର ପ୍ରାକୃତିକ ଶତ୍ରୁର ଉପଯୋଗ । ପ୍ରକୃତିରେ ପ୍ରତି କୀଟର ପର୍ଯ୍ୟାପ୍ତ ପରିମାଣର ଶତ୍ରୁ ଅଛନ୍ତି, ଯେଉଁମାନେ କୀଟ ସଂଖ୍ୟାକୁ କମାଇ ପାରନ୍ତି । ତେଣୁ ଫସଲ ହାନିକାରୀ କୀଟ ବା ପରଜୀବୀଙ୍କ ଖାଦକମାନେ ବଢ଼ିପାରିବା ପାଇଁ କିଛି ଅଞ୍ଚଳ ଛାଡ଼ିଦେବାକୁ ହେବ ।

**କୀଟନାଶକ କମାଇବାର ବାଟ**

ଅନେକ ଲୋକ ତାଙ୍କ ଚାଷର ଧାରାକୁ ବିଭିନ୍ନ ବାଟରେ ବଦଳାଇ କୀଟନାଶକର ବ୍ୟବହାର କମାଇ ପାରିଛନ୍ତି । ପର ପୃଷ୍ଠାଗୁଡ଼ିକରେ ସେମାନଙ୍କର ଅଭିଜ୍ଞତାରୁ କିଛି ଦିଆଯାଇଛି ।





**ପ୍ରସିତ ଅଧ୍ୟୟନ ଦଳରେ ଯୋଗଦେଲା**

ପ୍ରସିତ ପ୍ରମ୍ରେଓ ଥାଇଲାଣ୍ଡର ଜଣେ ଧାନଚାଷୀ । ସେ ତା'ର ପଡ଼ୋଶୀ ଚାଷୀଙ୍କ ପରି ରାସାୟନିକ ଚାଷର ସମସ୍ୟାରେ ପଡ଼ିଥିଲା ।

ଖର୍ଚ୍ଚ ବଢ଼ିଚାଲିଥିଲା, ଅମଳ କମି ଆସୁଥିଲା । ତା'ଛଡ଼ା ସେ ଅଞ୍ଚଳରେ ଶ୍ରମିକଙ୍କର ମଧ୍ୟ ଅଭାବ ଦେଖାଦେଉଥିଲା । ପ୍ରସିତ ଭାବିଲା ଯେ ପ୍ରାକୃତିକ କୃଷି ହିଁ ଉତ୍ପାଦନ ଖର୍ଚ୍ଚ କମାଇବା ଏବଂ ମାଟିର ଉର୍ବରତା ଫେରାଇ ଆଣିବାର ଉପଯୁକ୍ତ ବାଟ ହେବ ।

ଗୋଟିଏ ସ୍ଥାନୀୟ ବେସରକାରୀ ସଂସ୍ଥାର ଅଧ୍ୟୟନ ଦଳରେ ପ୍ରସିତ ଯୋଗଦେଲା । ସେଠାରେ ସେ ଯାହା ଦେଖିଲା ତାହା ଦ୍ୱାରା ପ୍ରଭାବିତ ହେଲା ଏବଂ ନିଜ ଜମିରେ ପରୀକ୍ଷାମୂଳକ ଭାବରେ ମଲ୍‌ଚିଙ୍ଗ୍ ବା ଛାଦନ ପ୍ରଣାଳୀ ବ୍ୟବହାର କରିବା ପାଇଁ ସ୍ଥିର କଲା । ତା' ପରବର୍ଷ ଧାନବୁଣିବା ଆଗରୁ ଜମି ହଳ କଲା । ପ୍ରଥମେ ମୁଗ ବୁଣି ମାଟିକୁ ଉର୍ବର କରାଇଲା । ମୁଗ ଗୋଟିଏ ଭଲ ସବୁଜ ଖତ । ମୁଗ ଭଲ ଖତ ହେବା ସହ ମାଟିକୁ ବର୍ଷସାରା ଘୋଡ଼େଇ ରଖି ସୁରକ୍ଷିତ ରଖିଥାଏ ।

ବୁଣି ସାରିବା ପରେ ସେ ମାଟିରେ ଧାନର ନଡ଼ା ମିଶାଇ ପଚାଇଦେଲା । ଏହା ମାଟିର ଉର୍ବରତା ବଢ଼ାଇବା ସହ ତା'ର ଜଳୀୟ ଅଂଶକୁ ବାନ୍ଧିରଖେ । ସେ ହାତରେ ଓପାଡ଼ି ବା ଜମିର ପାଣିସ୍ତରକୁ ନିୟନ୍ତ୍ରଣ କରି ଜମିରେ ବଢ଼ୁଥିବା ଅନାବନା ଘାସ ଦବାଇଲା । କଠିନ ପରିଶ୍ରମ ଓ ଉତ୍ତମ ଯୋଜନାବଦ୍ଧ ଚାଷ ପଦ୍ଧତି ଯୋଗୁଁ ପ୍ରସିତ ପୂର୍ବ ଅପେକ୍ଷା ଅଧିକ ଅମଳ ପାଇଲା ।

**ଅନାବନା ଘାସ ସମସ୍ୟା ସୃଷ୍ଟି କରେ ନାହିଁ**

ଛ' ବର୍ଷର ପ୍ରାକୃତିକ କୃଷି କରିବାର ଅଭିଜ୍ଞତା ପରେ ପ୍ରସିତ ଦେଖିଲା ଯେ ଖର୍ଚ୍ଚ, ପରିଶ୍ରମ ଓ ମାଟିର ଉର୍ବରତା ଦୃଷ୍ଟିରୁ ଏହା ତାକୁ ସୁହାଉଛି । ତା'ର ଅମଳ ଏବେ ମଧ୍ୟ ବେଶ୍ ଅଧିକ । ୧୯୯୫ ମସିହାରେ ତା'ର ଗୋଟିଏ ଜମିରେ ଏକର ପ୍ରତି ୧୨୮୫ କିଲୋଗ୍ରାମ ଅମଳ ସେ ପାଇଥିଲା ।

ଅନାବନା ଘାସ ତା ପାଇଁ ସମସ୍ୟା ନୁହେଁ । ଧାନ କୀଟଗୁଡ଼ିକ ଚାରିଆଡ଼େ ଅଛନ୍ତି, କିନ୍ତୁ ସେମାନେ ଗୁରୁତର କ୍ଷତି କରୁ ନାହାନ୍ତି । ପ୍ରାକୃତିକ ଧାନଚାଷରେ ପ୍ରସିତର ମୁଖ୍ୟ ସମସ୍ୟା ହେଲା କାମ କରିବା ପାଇଁ ଯଥେଷ୍ଟ ଶ୍ରମିକ ନମିଳିବା ।

**ସମନ୍ୱିତ କୀଟ ପରିଚାଳନା**

ଏସିଆରେ କୀଟନାଶକର ବ୍ୟବହାର କମାଇବା ପାଇଁ ଜାତିସଂଘର ଖାଦ୍ୟ ଓ କୃଷି ସଂଗଠନ (ଏଫ୍‌ଏଓ) ୧୯୮୨ ମସିହାରେ ଗୋଟିଏ ବଡ଼ କାର୍ଯ୍ୟକ୍ରମ ଆରମ୍ଭ କଲା । ଏହି କାର୍ଯ୍ୟକ୍ରମରେ ଆଇପିଏମ୍ ବା ସମନ୍ୱିତ କୀଟ ସଂଚାଳନା ବ୍ୟବସ୍ଥାର ଉପଯୋଗ କରି କୀଟ ନିୟନ୍ତ୍ରଣ କରାଗଲା ।

ଏହି ପ୍ରକଳ୍ପ ଦେଖାଇଦେଲା ଯେ କମ୍ କୀଟନାଶକର ଉପଯୋଗ କରି ମଧ୍ୟ ଧାନଚାଷ ସମ୍ଭବ । ଏହା କେବଳ ଯେ ଉତ୍ପାଦନ ଖର୍ଚ୍ଚ କମାଇଲା ତାହା ନୁହେଁ, ଉତ୍ପାଦନ ବଢ଼ିବା ସହ ଚାଷୀର ରୋଜଗାର ମଧ୍ୟ ବଢ଼ିଲା । ଯଦିଓ ଏହି ପ୍ରକଳ୍ପ ଧାନ ଚାଷ ଉପରେ ଆରମ୍ଭ ହୋଇଥିଲା, ପରବର୍ତ୍ତୀ ସମୟରେ ଏଫ୍‌ଏଓ ଏହାକୁ ପନିପରିବା ଭଳି ଅନ୍ୟାନ୍ୟ ଫସଲରେ ମଧ୍ୟ ଉପଯୋଗ କଲା ।




**ଶ୍ରୀଲଙ୍କାରେ ସମନ୍ୱିତ କୀଟ ସଂଚାଳନା ପଦ୍ଧତି ଉପଯୋଗ ହେବାର ପୂର୍ବ ଓ ପର ଅବସ୍ଥାରେ ଖର୍ଚ୍ଚ ଓ ରୋଜଗାରର ତୁଳନା ।**

(୧୦୦୦ ଶ୍ରୀଲଙ୍କା ଟଙ୍କା, ହେକ୍ଟର ପ୍ରତି)

ଉତ୍ସ: ଫର୍ଣ୍ଣାଣ୍ଡୋ ୧୯୯୬

**ସବୁ କୀଟ ଅନିଷ୍ଟକାରୀ ନୁହନ୍ତି**

ଚାଷୀମାନେ ନିଜ ଜମି ତଥା ଜମିରେ ଥିବା ଗଛଲତା, କୀଟପତଙ୍ଗ ଓ ଅନ୍ୟ ଜୀବଜନ୍ତୁଙ୍କ ବିଷୟରେ ବିଭିନ୍ନ କଥା ଜାଣିବା ଆଇପିଏମ୍ ଏବଂ ପ୍ରାକୃତିକ କୃଷି ପାଇଁ ଅତି ଗୁରୁତ୍ୱପୂର୍ଣ୍ଣ ।

ସବୁ କୀଟ ବା ଜୀବଜନ୍ତୁ ଅନିଷ୍ଟକାରୀ ନୁହନ୍ତି । ଏହା ସତ ଯେ କିଛି କୀଟ ଉଦ୍ଭିଦକୁ ନଷ୍ଟ କରନ୍ତି, କିନ୍ତୁ ସେମାନେ ସବୁବେଳେ ଉତ୍ପାଦନ ଉପରେ ଯଥେଷ୍ଟ ପ୍ରଭାବ ପକାଇ ନଥା'ନ୍ତି । କୀଟ ସଂଖ୍ୟା ବହୁତ ବେଶୀ ହୋଇଥିଲେ ଏବଂ ଅନ୍ୟ କୀଟ ନିୟନ୍ତ୍ରଣ ବ୍ୟବସ୍ଥା କାମ ନକଲେ ଚାଷୀ କେବଳ ସଂକ୍ରମିତ ଅଞ୍ଚଳରେ କୀଟନାଶକ ବ୍ୟବହାର କରିପାରନ୍ତି । ଏହା କୀଟନାଶକର ପରିମାଣ ବେଶ୍ କମାଇଥାଏ ।

ସମନ୍ୱିତ କୀଟ ସଂଚାଳନା ବିଷୟରେ ଶିଖିବା ପାଇଁ ଗୋଟିଏ ଚାଷୀ-କ୍ଷେତ-ବିଦ୍ୟାଳୟ ଗଢ଼ିବା ଭଲ । ଚାଷୀମାନେ ଏକାଠି ହୋଇ ଗୋଟିଏ ଅଧ୍ୟୟନ ଦଳ ଗଢ଼ିପାରିବେ । ସେମାନେ ନିଜ ଜମିରୁ ଶିଖିପାରିବେ ଏବଂ କ'ଣ ଭଲ କାମ କରୁଛି ଦେଖିବା ପାଇଁ ମିଶିକରି ପରଖ କରିପାରିବେ । ଏହା ମାଧ୍ୟମରେ ସେମାନେ ନିଜ ନିଜର ଅଭିଜ୍ଞତା ମଧ୍ୟ ବାଣ୍ଟି ପାରିବେ ।

ଅଧିକାଂଶ ଏସୀୟ ରାଷ୍ଟ୍ର ସମନ୍ୱିତ କୀଟ ସଂଚାଳନା ବ୍ୟବସ୍ଥାକୁ ନିଜ ନିଜର ଜାତୀୟ କୃଷିନୀତିର ଗୋଟିଏ ଅଂଶରୂପେ ଗ୍ରହଣ କରିଛନ୍ତି ।





**କିମିଆର ପରିସମାପ୍ତି ଘଟିଲା**

ଅନ୍ୟ ସମସ୍ତ ବିକାଶଶୀଳ ଦେଶର ଚାଷୀମାନଙ୍କ ପରି ମାଲେସିଆର ସୁଙ୍ଗାଇ ବୁଆୟାର ଚାଷୀମାନେ ମଧ୍ୟ 'ସବୁଜ ବିପ୍ଳବ'ର ନୂଆ ଚାଷ ବ୍ୟବସ୍ଥାରୁ ବହୁତ କିଛି ଆଶା କଲେ । ପ୍ରଥମେ ଏଥିରୁ ନାଟକୀୟ ଭାବରେ ଅଧିକ ଅମଳ ମିଳିଲା । ପରେ କିନ୍ତୁ ଉଚ୍ଚ ଅମଳକ୍ଷମ ବିହନ, ରାସାୟନିକ ସାର, କୀଟନାଶକ ଏବଂ ଯନ୍ତ୍ରପାତି ପାଇଁ ଖର୍ଚ୍ଚ ବଢ଼ିଚାଲିଲା । ଅଧିକ ରାସାୟନିକର ବ୍ୟବହାର ମାଛ, ଉପକାରୀ କୀଟ ତଥା ଅନ୍ୟ ଜୀବଜନ୍ତୁଙ୍କୁ ମାରି ପକାଇଲା । ପାଣିର ଉତ୍ସ ପ୍ରଦୂଷିତ ହେଲା । ଚାଷୀ ଓ ତାଙ୍କ ପରିବାର ବିଭିନ୍ନ ସ୍ୱାସ୍ଥ୍ୟ ସମସ୍ୟାରେ ପଡ଼ିଲେ । କିମିଆର ପରିସମାପ୍ତି ଘଟିଲା ।

ଏହି ସମସ୍ୟାକୁ ନେଇ ଚାଷୀମାନେ ସ୍ଥାନୀୟ ବେସରକାରୀ ଅନୁଷ୍ଠାନ ଏରା କଞ୍ଜୁମର୍ସ ସହିତ ପରାମର୍ଶ କଲେ – ବିନା କୀଟନାଶକରେ ଧାନଚାଷ ସମ୍ଭବ କି ?

ଏରା ମିଳିତ ଜାତିସଂଘର ଖାଦ୍ୟ ଓ କୃଷି ଅନୁଷ୍ଠାନର କର୍ମକର୍ତ୍ତାଙ୍କ ସହ ଯୋଗାଯୋଗ କରି ଆଇପିଏମ୍ ପ୍ରକଳ୍ପ ଆରମ୍ଭ କଲେ । ଏହି ପ୍ରକଳ୍ପ ଏଫ୍ଓଓ, କୃଷି ମନ୍ତ୍ରଣାଳୟର ସଂପ୍ରସାରଣ ବିଭାଗ, ବେସରକାରୀ ଅନୁଷ୍ଠାନ ଓ ଚାଷୀଙ୍କର ମିଳିତ ଉଦ୍ୟମ ହେଲା ।

ଚାଷୀମାନଙ୍କୁ ଆଇପିଏମ୍ ବିଷୟରେ ପ୍ରଶିକ୍ଷଣ ଦିଆଗଲା ଏବଂ ଗୋଟିଏ ଚାଷୀ-କ୍ଷେତ-ବିଦ୍ୟାଳୟ ଆରମ୍ଭ କରାଗଲା । ପରୀକ୍ଷଣ କ୍ଷେତ ତିଆରି କରି ନୂଆ କୌଶଳ ସବୁ ଦେଖାଇ ଦିଆଗଲା ।

**ଚାଷୀ ଆତ୍ମସମର୍ପଣ କରିନାହାନ୍ତି**

ରାସ୍ତା ଏତେ ସହଜ ନଥିଲା । ପ୍ରାଥମିକ ସଫଳତା ପରେ କୀଟ ସମସ୍ୟା ଲାଗି ରହିଲା । ଚାଷୀମାନେ ଜଳ ସେଚନ ପାଇଁ ଆସୁଥିବା ପାଣିକୁ ନିୟନ୍ତ୍ରଣ କଲେ ନାହିଁ ।

କିନ୍ତୁ ଚାଷୀମାନେ ଆଶା ଛାଡ଼ି ନାହାନ୍ତି । ସେମାନେ କୀଟନାଶକ ମୁକ୍ତ ଧାନ ଉତ୍ପାଦନ କରି ପାରୁଛନ୍ତି ।

ଦୁର୍ଭାଗ୍ୟର କଥା ଯେ ତାଙ୍କର ଧାନକୁ ଅନ୍ୟମାନଙ୍କ ଧାନ ସହ ମିଶାଇ ଦିଆଯାଉଛି । ତେଣୁ ଏହି ଧାନ ଖାଇବାର ଲାଭ ଚାଷୀ ବା ଖାଉଟି କେହି ପାଇପାରୁ ନାହାନ୍ତି । ଏହାର ପରବର୍ତ୍ତୀ ଆହ୍ୱାନ ହେଉଛି ଏହି ଧାନରୁ ଅଲଗା ଭାବରେ ଚାଉଳ କରିବା ଏବଂ ବଜାରରେ ବିକ୍ରି କରିବା । ଏହା ହୋଇପାରିଲେ ଚାଷୀମାନେ ତାଙ୍କ ପରିଶ୍ରମ ଓ ଉଦ୍ୟମର ଲାଭ ପାଇ ପାରିବେ ।



**କ୍ୟୁବା ଅଧିକାଂଶ ଜମିକୁ ଜୈବିକ କୃଷି କ୍ଷେତରେ ବଦଳାଇଲା**

କ୍ୟୁବା କାରିବୀୟ ସାଗରରେ ଅବସ୍ଥିତ ଦେଶଟିଏ । ଅନ୍ୟ ବିକାଶଶୀଳ ଦେଶ ପରି ଏହି ଦେଶରେ ମଧ୍ୟ 'ସବୁଜ ବିପ୍ଳବ' ଚାଷ ବ୍ୟବସ୍ଥା ଚାଲୁ ହୋଇଥିଲା । ସୋଭିଏତ୍ ମହାସଂଘ ଭାଙ୍ଗିଗଲା ପରେ କ୍ୟୁବା ଆବଶ୍ୟକ ହେଉଥିବା କୀଟନାଶକ ଓ ସାର ଆମଦାନୀ କରିପାରିଲା ନାହିଁ । ଏପରି କି ଟ୍ରାକ୍ଟର ଚାଲିବା ପାଇଁ ଆବଶ୍ୟକ ତେଲ ପାଇଁ ଖର୍ଚ୍ଚ କରିବାକୁ ମଧ୍ୟ ଯଥେଷ୍ଟ ଅର୍ଥ ନଥିଲା ।

ଏଭଳି ଆକସ୍ମିକ ପରିବର୍ତ୍ତନ ଫଳରେ ସମସ୍ତ ଚାଷକୁ ଜୈବିକ କୃଷି ମାଧ୍ୟମକୁ ବଦଳାଇ ଦେବା ପାଇଁ କ୍ୟୁବା ସରକାର ଆହ୍ୱାନ ଦେଲେ । କୀଟ ନିୟନ୍ତ୍ରଣ ପାଇଁ ବାଟ ବାହାର କରିବା ଉଦ୍ୟମରେ ବୈଜ୍ଞାନିକମାନେ ଲାଗିପଡ଼ିଲେ । କମ୍ପୋଷ୍ଟ ତିଆରିର ଧାରାକୁ ଉନ୍ନତ କରାଗଲା ଏବଂ ଜୈବିକ ଖତ ବ୍ୟବହାର କରି ମାଟିରେ ଯବକ୍ଷାରଜାନର ପରିମାଣ ବଢ଼ାଗଲା । କ୍ଷେତରେ କାମ କରିବା ପାଇଁ ସହରର ଲୋକମାନଙ୍କୁ ପ୍ରୋତ୍ସାହନ ଦିଆଗଲା ।

ନିଜ କୃଷିର ଉନ୍ନତି, ଚାଷୀଙ୍କ ଜୀବିକାର ନିଶ୍ଚିତତା ଓ ଦେଶର ଖାଦ୍ୟ ସୁରକ୍ଷା ପାଇଁ ଗୋଟିଏ ଗରିବ ଦେଶ କ'ଣ କରିପାରିବ, ଏହା ହେଉଛି ତା'ର ଗୋଟିଏ ଉଦାହରଣ ।



# କୀଟନାଶକର ବିକଳ୍ପ

କୀଟନାଶକର ବିକଳ୍ପ ବିଷୟରେ କହିବା କଷ୍ଟକର । କାରଣ ଏହା କେବଳ କୀଟନାଶକ ବଦଳରେ ଆଉ କିଛି ବ୍ୟବହାର କରିବା ଭିତରେ ସୀମିତ ନୁହେଁ । ପ୍ରକୃତରେ ଏହା ହେଉଛି ଅନେକଗୁଡ଼ିଏ ସାଧନର ବ୍ୟବହାର ମାଧ୍ୟମରେ କୀଟମାନଙ୍କ ସଂଖ୍ୟା କମାଇବାର ଧାରା ।

ବିକଳ୍ପ କୀଟ ସଂଚାଳନାରେ ରହିଛି:

- ଜୈବ କୀଟ ନିୟନ୍ତ୍ରଣ
- ଉଦ୍ଭିଦଭିତ୍ତିକ କୀଟ ନିୟନ୍ତ୍ରଣ
- ସାଂସ୍କୃତିକ କୀଟ ନିୟନ୍ତ୍ରଣ ଏବଂ
- ଖାଦକ, ପରଜୀବୀଭୋଜୀ ବା ରୋଗାଣୁକୁ ଉତ୍ସାହିତ କରିବା

**କୌଶଳ ଓ ଯନ୍ତ୍ର**

କୀଟଙ୍କୁ ପ୍ରତିହତ କରିବା ପାଇଁ ପୃଥିବୀ ସାରା ଚାଷୀ ବହୁ କାଳରୁ ବିଭିନ୍ନ ପ୍ରକାରର କୌଶଳ ଓ ଯନ୍ତ୍ର ବ୍ୟବହାର କରି ଆସୁଛନ୍ତି । ଏସବୁର କିଛି ଉଦାହରଣ ହେଉଛି - ଚଢ଼େଇ ଘଉଡ଼େଇବା ପାଇଁ ପାଳଭୂତ ରଖିବ, ସେମାନଙ୍କୁ ଧରିବା ପାଇଁ ଜାଲ ପକାଇବା, ଧାନ କିଆରୀରୁ ମୂଷା ଚଢ଼େଇ ଆଦିଙ୍କୁ ତଡ଼ିବା ପାଇଁ ଶବ୍ଦ କରୁଥିବା ଟିଣ ପନ୍ତ ଖଞ୍ଜିବା, ମୂଷା ଯନ୍ତ୍ର ରଖିବା, କୀଟମାନଙ୍କୁ ଆକର୍ଷିତ କରି ଯନ୍ତ୍ରରେ ପୁରାଇବା, ଯେଉଁଠୁ ସେମାନେ ବାହାରି ଯାଇପାରିବେ ନାହିଁ ।

ଅନ୍ୟ ଯାନ୍ତ୍ରିକ ମାଧ୍ୟମ ଭିତରୁ ଆଲୁଅ ଯନ୍ତ୍ର ଗୋଟିଏ । ଏହା ଖୁବ୍ କମ୍ ଖର୍ଚ୍ଚରେ ତିଆରି କରାଯାଇପାରେ । ଆଲୁଅ ଯନ୍ତ୍ର ସାହାଯ୍ୟରେ କୀଟମାନଙ୍କ ସଂଖ୍ୟା ଆକଳନ କରିବା ସହିତ ସେମାନଙ୍କୁ କମାଇ ହୁଏ ।





**ଅନେକ ପାରମ୍ପରିକ କୌଶଳ ଏବେ ବି କାମରେ ଲାଗୁଛି**

ଶ୍ରୀଲଙ୍କାରେ ଏବେ ମଧ୍ୟ ଅନେକଗୁଡ଼ିଏ ପାରମ୍ପରିକ କୌଶଳ ଚାଷୀମାନେ ଉପଯୋଗ କରୁଛନ୍ତି । ଧାନର କାଣ୍ଡବିନ୍ଧା ପୋକ ନିୟନ୍ତ୍ରଣ ପାଇଁ 'ହିରିମା ପିଡ଼ିମା' ନାମକ ବ୍ୟବସ୍ଥାର ବ୍ୟବହାର କରାଯାଏ ।

ଯେତେବେଳେ କୌଣସି ଚାଷୀ କ୍ଷେତରେ କାଣ୍ଡବିନ୍ଧା ମଥ୍‌କୁ ଦେଖେ ସେ ଏହାର ସୂଚନା ଅନ୍ୟ ଚାଷୀମାନଙ୍କୁ ଦେଇଥାଏ । ଏହାପରେ ଗାଁ ମୁଖିଆ ସମସ୍ତଙ୍କ ଘରୁ ଧାନ ସଂଗ୍ରହ କରନ୍ତି ଏବଂ କୌଣସି ରବିବାର ସୂର୍ଯ୍ୟୋଦୟ ପୂର୍ବରୁ ଏକ ସ୍ୱତନ୍ତ୍ର ଉତ୍ସବ ପାଇଁ ସ୍ଥାନ ବାଛନ୍ତି । ସେଦିନ ସଂଗୃହୀତ ଧାନକୁ ଗୁଣ୍ଡ କରି ନଡ଼ିଆକ୍ଷୀରରେ ଭଲ ଭାବରେ ମିଶାଇ ଗୋଳା ତିଆରି କରାଯାଏ ଏବଂ ଗୋଳାଗୁଡ଼ିକୁ ଧାନ କିଆରି ଭିତରକୁ ଫୋପାଡ଼ି ଦିଆଯାଏ । ଏହି କାମ ସରିଲା ପରେ ସବୁ ଚାଷୀ ଏକାଠି ତାଳି ମାରନ୍ତି । ଧାନ-ନଡ଼ିଆ ଗୋଳା ଚଢ଼େଇଙ୍କୁ ଆକର୍ଷିତ କରେ ଏବଂ ସେମାନେ ଆସି ମଥ୍‌ଗୁଡ଼ିକୁ ମଧ୍ୟ ଖାଇଯାଆନ୍ତି । ଏହି କାର୍ଯ୍ୟକ୍ରମର ତିନି ଦିନ ଯାଏଁ କାହାରିକୁ କ୍ଷେତକୁ ଯିବାକୁ ଦିଆଯାଏ ନାହିଁ । ଫଳରେ ଚଢ଼େଇମାନେ ମଣିଷକୁ ଡରିକରି ଉଡ଼ିଯାଆନ୍ତି ନାହିଁ ।

ଏହି ଧାରାର ସବୁଠାରୁ ବଡ଼ କଥା ହେଉଛି ଯେ କାମଟିରେ ପୂରା ଗୋଷ୍ଠୀ ଏକାଠି ଭାଗନିଅନ୍ତି ।

**ଅନିଷ୍ଟକାରୀ କୀଟକୁ ମାରିବା ପାଇଁ କିଛି ଛୋଟ କୀଟ ମଧ୍ୟ ରହିଛନ୍ତି**

ଜୈବିକ କୀଟ ନିୟନ୍ତ୍ରଣ ହେଉଛି ଖାଦକ, ପରଜୀବୀଭୋଜୀ ଓ ରୋଗାଣୁର ବ୍ୟବହାର କରି କୀଟମାନଙ୍କ ସଂଖ୍ୟା କମାଇବା । ପ୍ରାକୃତିକ କୀଟ ନିୟନ୍ତ୍ରଣ ଧାରାରେ କେତେଗୁଡ଼ିଏ ଛୋଟ କୀଟ ହେଉଛନ୍ତି ସ୍ୱୀକୃତି ପାଇନଥିବା ମୁଖ୍ୟ କର୍ମୀ । ଏହାର କାରଣ ହେଉଛି ସାଧାରଣ ଭାବରେ ସେମାନଙ୍କ ଉପସ୍ଥିତି ଜଣାନପଡ଼ିବା । ଆହୁରି ମଧ୍ୟ ସେମାନେ ଗୋଟିଏ ଗୋଟିଏ ପ୍ରକାର କୀଟକୁ ଖାଇଥା'ନ୍ତି । ତେଣୁ ସେମାନେ ନିର୍ଦ୍ଦିଷ୍ଟ ପ୍ରକାରର କୀଟ ନିୟନ୍ତ୍ରଣ ପାଇଁ ବେଶ୍ ପ୍ରଭାବଶାଳୀ ହୋଇଥାନ୍ତି ।

ଅନେକଗୁଡ଼ିଏ ଛୋଟ ବିରୁଡ଼ି ଏହାର ଉଦାହରଣ । କେତେକ ବିରୁଡ଼ି କୋଟଳିର ଅଣ୍ଡା ଭିତରେ ତାଙ୍କ ଅଣ୍ଡା ଛାଡ଼ନ୍ତି । ଆଉ କିଛି ବିରୁଡ଼ି ଅନ୍ୟ କୀଟର କୋଷା ଭିତରେ ଅଣ୍ଡା ଦିଅନ୍ତି । ଗୋଟିଏ ପ୍ରକାରର ବିରୁଡ଼ି ପୂର୍ଣ୍ଣାଙ୍ଗ ଜଉପୋକର ଦେହରେ ତା'ର ଅଣ୍ଡା ଦେଇଥାଏ । ଏହାକୁ ଜାଣିବା ପାଇଁ ଚାଷୀ ପାଖରେ ଗୋଟିଏ ବାଟ ଅଛି । ଚିକ୍‌ଚିକ୍ କରୁଥିବା ଜଉପୋକର ଟାଣ ମଲା ଦେହର ପାଛପାଖରେ ଥିବା କଣାରୁ ବିରୁଡ଼ି କାମର ସୂଚନା ମିଳିପାରେ । ଏହି କଣା କରି ପୂର୍ଣ୍ଣାଙ୍ଗ ବିରୁଡ଼ି ବାହାରି ଯାଇଥାଏ । ବେଳେବେଳେ ଏହା ଜାଣିବା ପାଇଁ ଯବକାଚ ଧରି ଦେଖିବାକୁ ହୁଏ (କେତେକ ଚାଷୀ ତାଙ୍କ ଗଛଗୁଡ଼ିକୁ ଯତ୍ନର ସହ ଲକ୍ଷ୍ୟ କରିଥା'ନ୍ତି) ।

କିଛି ଛୋଟ ଛୋଟ ସୂତ୍ରକୃମୀ, କବକ, ବୀଜାଣୁ ଓ ଭୂତାଣୁ ହେଉଛନ୍ତି ଏହି ଗୋଷ୍ଠୀର ଆଉ କିଛି ଉଦାହରଣ ।



**ସବୁଠୁ ପୁରୁଣା ଜଣାଥିବା କୀଟ ନିୟନ୍ତ୍ରଣ କାର୍ଯ୍ୟକ୍ରମ**

ହାନିକାରୀ କୀଟର ପ୍ରାକୃତିକ ଶତ୍ରୁ ଜାତିର ସବୁଠାରୁ ପୁରୁଣା ଉଦାହରଣ ପ୍ରାଚୀନ ଚୀନରୁ ମିଳିଛି ।

ଏହା ହେଉଛି ହଳଦିଆ ପିମ୍ପୁଡ଼ିର ବସା ସଂଗ୍ରହ କରି ଲେମ୍ବୁ ଜାତୀୟ ଗଛରେ ଛାଡ଼ି ସେ ଗଛରେ ହେଉଥିବା ସଁବାଳୁଆକୁ ନିୟନ୍ତ୍ରଣ କରିବାର ଧାରା । ଦଉଡ଼ିର ପୋଲ ଏଗଛରୁ ସେଗଛକୁ ଯିବା ପାଇଁ ପିମ୍ପୁଡ଼ିକୁ ସାହାଯ୍ୟ କରେ । ଗଛମୂଳରେ ପାଣି ଜମା କରି ପିମ୍ପୁଡ଼ିଙ୍କୁ ସେହି ଗଛରେ ରହିବାକୁ ବାଧ୍ୟ କରାଯାଉଥିଲା ।

କୀଟଖାଦକର ବସତି ବିଷୟରେ ଜାଣିଲେ ସେମାନଙ୍କୁ ଚାଷଜମି ପାଖରେ ରଖିବାର ବ୍ୟବସ୍ଥା କରିହୁଏ । ଲାଭକାରୀ କୀଟଙ୍କ ବିକଳ୍ପ ଖାଦ୍ୟ ଉତ୍ସ ପାଇଁ ପରାଗରେଣୁ ଓ ମହୁ ଦେଉଥିବା ଫୁଲଗଛ ଓ ବୁଦା ସବୁ ଲଗାଇବା ଉଚିତ । ସେହିପରି କିଛି ଜାତିର ଉଦ୍ଭିଦ ହେଲେ କାସିଆ ବାଇଫ୍ଲୋରା, ଅମ୍ବେଲିଫେରି ପରିବାର (ସ୍ନାପଡ୍ରାଗନ୍), ପୋଦିନା ଓ ସୂର୍ଯ୍ୟମୁଖୀ ବଂଶର ଉଦ୍ଭିଦ ଖାଦକମାନଙ୍କୁ ଆକର୍ଷିତ କରିଥାଏ । ତେଣୁ ଏଗୁଡ଼ିକ ଚାଷଜମିରେ ବା ପାଖାପାଖି ଅଞ୍ଚଳରେ ଲଗାଇବା ଉଚିତ ।



**ପଦକ୍ଷେପ ପାଇଁ!**



**ଆପଣ ନିଜ ବଗିଚା ବା ଜମିରେ ଉପକାରୀ ବୁଢ଼ୀଆଣୀଙ୍କୁ ଚିହ୍ନଟ କରି ପାରିବେ କି ?**

**ଆପଣ ଜାଣିଛନ୍ତି କି ସେମାନେ କେଉଁ ପ୍ରକାରର କୀଟକୁ ଖାଆନ୍ତି?**

**ତାଙ୍କ ଆବାସସ୍ଥଳୀ ବିଷୟରେ ଜାଣିଛନ୍ତି କି?**



**ଜୈବିକ ସିଞ୍ଚନ**

କିଛି ଉଦ୍ଭିଦରେ ଏମିତି କିଛି ପଦାର୍ଥ ରହିଛି ଯାହା ବିଭିନ୍ନ ପ୍ରକାର କୀଟକୁ ମାରିବା ବା ତଡ଼ିବା ପାଇଁ ସକ୍ଷମ । ନିମ୍ବ ପତ୍ରର ନିଷ୍କର୍ଷ ସବୁଠୁ ଜଣାଶୁଣା ପ୍ରାକୃତିକ କୀଟନାଶକ । ସେହିପରି ରସୁଣର ମଧ୍ୟ କୀଟ ତଡ଼ିବାର କଡ଼ା ଗୁଣ ରହିଛି । ଏହିପରି ଅନ୍ୟ କେତେ ଉଦ୍ଭିଦ ମଧ୍ୟ ପାରମ୍ପରିକ ଭାବରେ କୀଟ ନିୟନ୍ତ୍ରଣ ପାଇଁ ବ୍ୟବହାର ହୋଇଆସୁଛି ।

ଏହାର କିଛି ଉଦାହରଣ ହେଲା:

**ମାଡ୍ରେ ଡେ କାକାଓ ଗ୍ଲିରିସିଡିଆ ସେପିଅମ୍ ଘୋଳ**

ମାଡ୍ରେ ଡ଼େ କାକାଓ ପତ୍ରକୁ ଛେଚି ତାହାର ରସ ବାହାର କର । ଏହାକୁ ୧-୩ ସପ୍ତାହ ପାଇଁ ଛାଇରେ ରଖ (ଚୁପୁଡ଼ା ସରିଥିବା ଛେଚା ପତ୍ରକୁ ସାର ଏବଂ ବିତାଡ଼କ ଭାବରେ ବ୍ୟବହାର କରିହେବ) । ଏକ ଲିଟର ରସରେ ଚାରି ଲିଟର ପାଣି ମିଶାଇ ଜୈବିକ ସିଞ୍ଚନ ଭାବରେ ବ୍ୟବହାର କରାଯାଇ ପାରିବ ।

**ପାଚିଲା ଲଙ୍କା - ସାବୁନ ମିଶ୍ରଣ**

ଏହା ବିଶେଷ ଭାବରେ କୋବି ଓ ସବୁଜ ପନିପରିବା ପାଇଁ ବେଶୀ ଫଳପ୍ରଦ ହୋଇଥାଏ । ସାବୁନ ପାଣିରେ କିଛି ଲଙ୍କା ଗୁଣ୍ଡ ଭଲ ଭାବରେ ମିଶାଅ (ସାବୁନ ଲଙ୍କାର ଛୋଟ ଅଂଶ ସବୁକୁ ଉଦ୍ଭିଦର ପତ୍ରରେ ଲାଖିବାରେ ସାହାଯ୍ୟ କରେ) । ସଂକ୍ରମିତ ଉଦ୍ଭିଦ ଅଂଶରେ ଏହି ମିଶ୍ରଣରୁ ଅଳ୍ପ ସିଞ୍ଚନ କରନ୍ତୁ । (ଏହାର ଅତ୍ୟଧିକ ବ୍ୟବହାର ଫସଲର ପତ୍ରକୁ ପୋଡ଼ି ଦେଇପାରେ ।)

**ଅଧିକାଂଶ ଗୋଷ୍ଠୀ ପାଖରେ ବେଶ୍ କିଛି ଜ୍ଞାନ ଓ ଅଭିଜ୍ଞତା ରହିଛି**

ଆଉ କିଛି ପାରମ୍ପରିକ ଧାରା ହେଉଛି - ମହୁଲ (ବାସିଆ ଲାଟିଫୋଲିଆ) ବା ନିମ୍ ପିଡ଼ିଆ (ମଞ୍ଜିରୁ ତେଲ ବାହାର କଲା ପରେ ଯାହା ବଳକା ରହେ)କୁ ମାଟିରେ ମିଶାଇବା । ଏହା ଫଳରେ ସୂତ୍ରକୃମି ଓ ଅନ୍ୟ କୃମିର ସମସ୍ୟା କମିଯାଏ ।

ଏ ପ୍ରକାର ଉଦାହରଣର ତାଲିକା ସରିବ ନାହିଁ ।

ଆପଣଙ୍କ ଅଞ୍ଚଳରେ ନିଶ୍ଚୟ ଅନେକ ଚାଷୀ, ବୈଦ୍ୟ ବା ଅନ୍ୟ କେହି ଥିବେ ଯେଉଁମାନେ ଉଦ୍ଭିଦ, ମଞ୍ଜି ଏବଂ କୀଟପତଙ୍ଗ ବିଷୟରେ ବହୁ ମୂଲ୍ୟବାନ କଥା ଜାଣିଥିବେ ।

ଅନେକ ସଂସ୍କୃତି ଓ ଗୋଷ୍ଠୀରେ ମହିଳାମାନେ ହିଁ ଏହି ପ୍ରକାରର ଜ୍ଞାନକୁ ସଂରକ୍ଷିତ କରି ରଖିଥା'ନ୍ତି ।



**ପଦକ୍ଷେପ ପାଇଁ!**



ଆପଣଙ୍କ ଅଞ୍ଚଳରେ କୀଟରୋକିବା ପାଇଁ କି ପ୍ରକାର ପାରମ୍ପରିକ ବ୍ୟବସ୍ଥା ଚଳୁଛି ତାହା ଖୋଜନ୍ତୁ । ଅନ୍ୟ ଜାଗାର କୌଣସି ବ୍ୟବସ୍ଥା ଆପଣଙ୍କ ଅଞ୍ଚଳରେ କାମ ଦେବ କି ?

ଆପଣଙ୍କ ପାଖ ଅଞ୍ଚଳରେ ଓ ଜିଲ୍ଲାରେ ପ୍ରକୃତି ବିଷୟରେ ବିଶେଷ ଜ୍ଞାନ ଥିବା ଲୋକଙ୍କୁ ଖୋଜନ୍ତୁ । ସେମାନଙ୍କଠାରୁ କିଛି ଶିଖି ପାରିବେ କି ?

# କୀଟ ସମସ୍ୟା କମାନ୍ତୁ

**ଚିକିତ୍ସାଠୁ ପ୍ରତିକାର ଭଲ**

କୌଣସି ସମସ୍ୟା ପାଇଁ ପ୍ରତିକାର ବ୍ୟବସ୍ଥା ହିଁ ସବୁଠୁ ଭଲ । ଏହି କଥାଟି ଚାଷରେ କୀଟ ସମସ୍ୟା ପାଇଁ ମଧ୍ୟ ଠିକ୍ ।

କୀଟ ପ୍ରତିକାର ପାଇଁ ଚାଷୀମାନେ ମିଶ୍ରିତ ବ୍ୟବସ୍ଥାର ଉପଯୋଗ କରିଥା'ନ୍ତି । କିଛି ବ୍ୟବସ୍ଥାର ପ୍ରଥମ ଲକ୍ଷ୍ୟ ହୁଏତ କୀଟ ନିୟନ୍ତ୍ରଣ ନ ହୋଇପାରେ, କିନ୍ତୁ ପରୋକ୍ଷ ଭାବରେ ତାହା କ୍ଷେତ ଓ ଫସଲକୁ କୀଟ ପ୍ରତି କମ୍ ସଂବେଦନଶୀଳ କରିଥାଏ ।

ଅନ୍ତର୍ବର୍ତ୍ତୀ ଫସଲ ଏବଂ ଫସଲ ପର୍ଯ୍ୟାୟ ଦୁଇଟି ଗୁରୁତ୍ୱପୂର୍ଣ୍ଣ ବାଟ ଯାହା ଉଭୟ କୀଟ କମାଇବା ତଥା ମାଟିକୁ ସୁସ୍ଥ ରଖିବା କାମ କରିଥାଏ । ପ୍ରଥମ ବ୍ୟବସ୍ଥାରେ ବିଭିନ୍ନ ପ୍ରକାରର ଉଦ୍ଭିଦ ଏକାଠି ଚାଷ କରାଯାଏ ଏବଂ ଦ୍ୱିତୀୟଟିରେ ବିଭିନ୍ନ ପ୍ରକାର ଉଦ୍ଭିଦ ଗୋଟିଏ ପରେ ଗୋଟିଏ ଚାଷ କରାଯାଏ ।

କୀଟ ନିୟନ୍ତ୍ରଣ ପାଇଁ ଚାଷ ବ୍ୟବସ୍ଥା –

- ଭଲ ମାଟି ପ୍ରସ୍ତୁତି
- ସ୍ଥାନୀୟ ଜାତିର ବିହନ ବ୍ୟବହାର
- ଜାଲ ପରଦାର ବ୍ୟବହାର
- ରୋଗଗ୍ରସ୍ତ ଗଛ କାଟିବା ବା ଉପାଡ଼ିବା ଏବଂ ନଷ୍ଟ କରିବା
- ଅନ୍ତର୍ବର୍ତ୍ତୀ ଫସଲରେ ବାସ୍ନାଯୁକ୍ତ କ୍ଷୁପ ମଧ୍ୟ ସାମିଲ କରିବା
- ଖାଦକ, ପରଜୀବୀଭୋଜୀ ଓ ରୋଗାଣୁଙ୍କୁ ଉତ୍ସାହିତ କରିବା
- ବହୁବିଧ ଫସଲ କରିବା
- ଫସଲ ପର୍ଯ୍ୟାୟ ଅନୁସରଣ କରିବା



ମିଶ୍ରିତ ଅନ୍ତର୍ବର୍ତ୍ତୀ ଫସଲ

**ଅନ୍ତର୍ବର୍ତ୍ତୀ ଫସଲ ଓ ବିବିଧତା**

ଅନ୍ତର୍ବର୍ତ୍ତୀ ଫସଲ ଅର୍ଥ କୌଣସି ଜମିରେ ଏକ ସମୟରେ ଏକାଧିକ ଫସଲ କରିବା । ଏକା ଫସଲର ବିଭିନ୍ନ ଜାତିର ଫସଲ ଚାଷ କରିବା ଫଳରେ ଯଦି କୀଟ ଆକ୍ରମଣ କରେ ତେବେ ମୋଟ କ୍ଷତିର ପରିମାଣ କମିଥାଏ ।

ଅନ୍ତର୍ବର୍ତ୍ତୀ ଫସଲ ବିଭିନ୍ନ ବାଟରେ ଜମିକୁ ସାହାଯ୍ୟ କରିଥାଏ । ଯଥା:

- ଏହା କୀଟନାଶକର ବ୍ୟବହାର କମାଇଥାଏ । କାରଣ ଅନ୍ତର୍ବର୍ତ୍ତୀ ଫସଲରେ ଅନେକଗୁଡ଼ିଏ ସାହାଯ୍ୟକାରୀ କୀଟ ରହିବାକୁ ଜାଗା ପାଆନ୍ତି ।
- ଅନ୍ତର୍ବର୍ତ୍ତୀ ଫସଲରେ ଯବକ୍ଷାରଜାନ ବିବନ୍ଧନକାରୀ ଉଦ୍ଭିଦ ଥିଲେ ମାଟିର ଉର୍ବରତା ବଢ଼ିପାରେ ।
- ମାଟି ଭଲ ଭାବରେ ଘୋଡ଼େଇ ହୋଇଥିବା ତଥା ବିଭିନ୍ନ ଗଭୀରତାରେ ଚେର ମାଡ଼ିଥିବା ଯୋଗୁଁ ମାଟି ଧୋଇଯିବାରୁ ରକ୍ଷା ମିଳେ ।
- ଏହା ଦ୍ୱାରା ପାଣି, ସୂର୍ଯ୍ୟାଲୋକ ଓ ଉଦ୍ଭିଦଖାଦ୍ୟ ଉପଯୁକ୍ତ ଭାବରେ ବ୍ୟବହାର ହୋଇପାରେ ।
- ଏପରି କଲେ ସଂପୂର୍ଣ୍ଣ ଫସଲ ନଷ୍ଟ ହୋଇନଥାଏ, କାରଣ ଅଧିକାଂଶ କୀଟ, ଅନାବନା ଘାସ ଓ ରୋଗ ଗୋଟିଏ ପ୍ରକାର ଫସଲକୁ ଆକ୍ରମଣ କରିଥା'ନ୍ତି ।
- ଏହି ବାଟରେ ଏକା ପରିଶ୍ରମ ଓ ଚାଷ ଜମିରେ ଅଧିକ ଫସଲ ଅମଳ କରିହୁଏ ।
- ବିଭିନ୍ନ ପ୍ରକାର ଖାଦ୍ୟ ଉତ୍ପାଦନ ସ୍ୱାସ୍ଥ୍ୟପ୍ରଦ ପୋଷକ ଯୋଗାଇଥାଏ ।

**ଅନ୍ତର୍ବର୍ତ୍ତୀ ଚାଷ ଓ ସହାୟକ ଉଦ୍ଭିଦରୋପଣ ବିଭିନ୍ନ ବାଟରେ ସାହାଯ୍ୟ କରେ**

ଭାରତର କେତେକ ଚାଷୀ କୁସୁମ ମଞ୍ଜି ସହ ଅଳ୍ପ ଜୋଆର ମିଶାଇଥା'ନ୍ତି । ଜୋଆର ଗଛରେ କୋଟଳି ପୋକ ରହିବାକୁ ଭଲ ପାଏ । ଏହା ଜଉ ପୋକ ଓ ଉକୁଣୀର ଖାଦକ । ଏଗୁଡ଼ିକ କୁସୁମକୁ ବେଶ୍ ଆକ୍ରମଣ କରିଥା'ନ୍ତି ।

ମିଶ୍ର ଚାଷ ପାଇଁ ଅନ୍ୟ କିଛି ଯୋଡ଼ି ହେଉଛି

ଗାଜର - ସାଲଟ, ସବୁଜ ପିଆଜ, ରସୁଣ, ଛୋଟମୂଳ ପିଆଜ

ବନ୍ଧାକୋବି - ସବୁଜ ପିଆଜ, ତୁଳସୀ, ସେଲେରି, ଧନିଆ, ପାର୍ସଲି, ବିଲାତି ବାଇଗଣ

କାସାଭା - ବିନ୍

କାକୁଡ଼ି - ଚିନାବାଦାମ

ବାଇଗଣ - ରାଜ୍‌ମା

ଲେଟୁସ୍ - ମଟର ଜାତୀୟ ଲତା/ଗୁଳ୍ମ

ମକା - ବିନ୍

କ୍ଷୁଦ୍ରଶସ୍ୟ (ମିଲ୍ଲେଟ୍) - ବିନ୍, ଝୁଡ଼ଙ୍ଗ, ହରଡ଼

ଆଳୁ - ରସୁଣ, ବିନ୍



ଧାଡ଼ି ଅନ୍ତର୍ବର୍ତ୍ତୀ ଫସଲ

**ପଦକ୍ଷେପ ପାଇଁ!**



ଆପଣଙ୍କ ଅଞ୍ଚଳରେ ଆଗରୁ ବା ବର୍ତ୍ତମାନ ମିଶ୍ରଚାଷ ପାଇଁ କେଉଁ କେଉଁ ଉଦ୍ଭିଦ ମିଶ୍ରଣ ବ୍ୟବହାର ହୋଇ ଆସୁଛି ତା'ର ଗୋଟିଏ ତାଲିକା କରନ୍ତୁ ।

ପ୍ରତ୍ୟେକ ମିଶ୍ରଣ ବା ସମ୍ଭାବ୍ୟ ନୂଆ ମିଶ୍ରଣର ଉପକାରୀତା ବିଷୟରେ ଆଲୋଚନା କରନ୍ତୁ ।

**ଫସଲ ପର୍ଯ୍ୟାୟ କୀଟର ଜୀବନ ଚକ୍ରକୁ ଭାଙ୍ଗି ଦିଏ**

କୀଟ ନିୟନ୍ତ୍ରଣ ପାଇଁ ଫସଲ ପର୍ଯ୍ୟାୟ ଏକ ସାଧାରଣ ତଥା ପ୍ରଭାବଶାଳୀ ବାଟ । କାରଣ ପ୍ରତି କୀଟ କିଛି ନିର୍ଦ୍ଦିଷ୍ଟ ଉଦ୍ଭିଦ ଦେହରେ ହିଁ ବଢ଼ିପାରନ୍ତି । ଫସଲ ପର୍ଯ୍ୟାୟ କୀଟ-ଆଶ୍ରୟ ଉଦ୍ଭିଦ ଚକ୍ରକୁ ଭାଙ୍ଗିଦିଏ ।

ଅଲଗା ଅଲଗା ଧାଡ଼ି ବା କିଆରିରେ ଅଲଗା ଅଲଗା ଫସଲ ଚାଷ କରାଗଲେ କୀଟମାନେ ପୂରା କିଆରିରେ ମାଡ଼ିଯିବାର ସୁବିଧା ପାଆନ୍ତି ନାହିଁ । ଏହା ତାଙ୍କ ପାଇଁ ପ୍ରାକୃତିକ ବାଧା ସୃଷ୍ଟି କରିଥାଏ । ଏକ ସମୟରେ ଅନେକ ପ୍ରକାରର ଫସଲ କରିବା ଫଳରେ ଅନେକଗୁଡ଼ିଏ ଉପକାରୀ ଜୀବ ମଧ୍ୟ ଆକର୍ଷିତ ହୋଇଥା'ନ୍ତି ।

ପ୍ରତ୍ୟେକ ଫସଲର ଆବଶ୍ୟକତା ଅନୁସାରେ ମାଟିର ଉର୍ବରତା ତଥା ରୋଗ ନିୟନ୍ତ୍ରଣ ଶକ୍ତିକୁ ଲକ୍ଷ୍ୟ ରଖି ପର୍ଯ୍ୟାୟ କ୍ରମରେ ବିଭିନ୍ନ ଫସଲ କରିବା ଉଚିତ । ଉଦାହରଣ ସ୍ୱରୂପ, ବିନ୍ ଓ ମଟର ପରି ଯବକ୍ଷାରଜାନ ବିବନ୍ଧନ କରୁଥିବା ଫସଲ ପରେ ଅଧିକ ଉର୍ବରତା ଦରକାର କରୁଥିବା ଫସଲ ଚାଷ କରିବା ଉଚିତ ।




---



**ପଦକ୍ଷେପ ପାଇଁ!**

ଆପଣଙ୍କ ଅଞ୍ଚଳରେ ପର୍ଯ୍ୟାୟ ଫସଲରେ କ'ଣ ସବୁ ବ୍ୟବହୃତ ହେଉଛି ?
କେଉଁ ପର୍ଯ୍ୟାୟ ମାଟିର ଉର୍ବରତା ବଢ଼ାଇଛି ?
କେଉଁ ପର୍ଯ୍ୟାୟ ଚାଷଟି ଭଲ କୀଟ ନିୟନ୍ତ୍ରଣ କରୁଛି ?
ଅନ୍ୟ କୌଣସି ପର୍ଯ୍ୟାୟ ଫସଲ ଚେଷ୍ଟା କରିଛନ୍ତି କି ?
ପର୍ଯ୍ୟାୟ ଫସଲ ଆପଣଙ୍କ ଉତ୍ପାଦନରେ କି ପ୍ରକାର ପ୍ରଭାବ ପକାଇଛି ?

**ଖାଦକଙ୍କୁ ଉତ୍ସାହିତ କରିବା**

ମାଛ ଓ ବତକ ମଧ୍ୟ କେତେ କୀଟକୁ ଖାଇଦିଅନ୍ତି । ଖାଦକମାନଙ୍କ ରହିବା ପାଇଁ ଉପଯୁକ୍ତ ପରିବେଶ ଯୋଗାଇଲେ ସେମାନେ ଆକର୍ଷିତ ହୋଇ ଆସନ୍ତି । ଏହା ବିଭିନ୍ନ ବାଟରେ କରାଯାଇପାରେ । ଗଛ, ବୁଦା ଆଦି ଲଗାଇବା ଏହାର ଗୋଟିଏ ବାଟ । ବିକଳ୍ପ ଉଦ୍ଭିଦ ଯୋଗାଇବା ଫଳରେ ଦୁଇଟି ବାଟରେ ଲାଭ ହୁଏ । ଏହା କୀଟଙ୍କୁ ଫସଲଠୁ ଦୂରକୁ ଆକର୍ଷିତ କରେ ଏବଂ ଏହା ଅଧିକ ଖାଦକଙ୍କୁ ଉତ୍ସାହିତ କରି ଫସଲକୁ ସୁରକ୍ଷା ଯୋଗାଏ ।

କୀଟନାଶକ ବ୍ୟବହାର ଠାରୁ ଦୂରେଇ ରୁହନ୍ତୁ । କୀଟନାଶକ ହାନିକାରୀ କୀଟ ସହ ଖାଦକ ତଥା ଉପକାରୀ କୀଟଙ୍କୁ ମଧ୍ୟ ମାରିଦିଏ ।

କୀଟ ଖାଦକମାନଙ୍କ ପାଇଁ ଜାଗା ଯୋଗାଇବା ନିଶ୍ଚୟ ଗୁରୁତ୍ୱପୂର୍ଣ୍ଣ, କିନ୍ତୁ ଦେଖିବାକୁ ହେବ ଯେ ହାନିକାରୀ କୀଟଙ୍କୁ ସୁହାଉଥିବା ଜାଗା ଯେପରି କମ୍ ରହେ । ସେମାନଙ୍କର ପ୍ରାକୃତିକ ବାସସ୍ଥାନ (ରହିବା ଓ ଲୁଚିବା ଜାଗା) ତଥା ବଂଶବିସ୍ତାର କରିବା ଜାଗାକୁ କମାଇବାକୁ ପଡ଼ିବ । ଆଖପାଖରେ ପାଣି, ଆବର୍ଜନା ବା ଅନ୍ୟ ଜିନିଷ ଯେପରି ଜମି ରହୁନଥିବ । କାରଣ ଏପ୍ରକାର ସ୍ଥାନରେ କୀଟ ରହିବା ସହ ବଂଶବିସ୍ତାର କରିଥା'ନ୍ତି । ତା'ଛଡ଼ା ଏହା ଚାଷ ଜମିକୁ ନିରୋଗ ରଖେ ଏବଂ ଚାଷ କାମ ପାଇଁ ସୁବିଧା କରେ ।



# ସୁସ୍ଥ ମାଟି - ସୁସ୍ଥ ଉଦ୍ଭିଦ - ସୁସ୍ଥ ମଣିଷ

**ମାଟିର କଥା ପ୍ରଥମେ ଭାବନ୍ତୁ**

ମଣିଷ ନିଜକୁ ସୁସ୍ଥ ରଖିବା ପାଇଁ ସ୍ୱାସ୍ଥ୍ୟପ୍ରଦ ଖାଦ୍ୟ ଖାଏ । ଠିକ ସେହିପରି ଉଦ୍ଭିଦ ସୁସ୍ଥ ମାଟି ଖୋଜେ । ଆପଣଙ୍କ ମାଟି କେତେ ଭଲ ?

ଆଧୁନିକ କୃଷି ମାଟିର ଉର୍ବରତା ବଢ଼ାଇବା ପାଇଁ ଏବଂ ଉଦ୍ଭିଦକୁ ପୋଷକ ଯୋଗାଇବା ପାଇଁ ଅଜୈବିକ (ରାସାୟନିକ) ସାର ଉପରେ ନିର୍ଭର କରେ । କିନ୍ତୁ ସେଗୁଡ଼ିକର ପ୍ରଭାବ କ୍ଷଣସ୍ଥାୟୀ - ସେମାନେ ଉଦ୍ଭିଦକୁ ଖାଦ୍ୟ ଯୋଗାନ୍ତି, ମାଟିକୁ ନୁହେଁ । ତା'ଛଡ଼ା ସେଗୁଡ଼ିକ ଅତ୍ୟଧିକ ଦାମିକା ଏବଂ ସହଜରେ ପାଣିର ଉତ୍ସକୁ ମଧ୍ୟ ପ୍ରଦୂଷିତ କରିଥା'ନ୍ତି ।

ମାଟିରେ ଉଦ୍ଭିଦ ଖତିର ଭଳି ଜୈବିକ ପଦାର୍ଥ ଯଥେଷ୍ଟ ପରିମାଣରେ ନଥିଲେ ତାହା ଜିଆ, କୀଟ ଓ ଅନ୍ୟ ଜୀବଗୋଷ୍ଠୀଙ୍କୁ ବଞ୍ଚେଇ ରଖିପାରେ ନାହିଁ । ଏଭଳି ଜୀବଙ୍କ ଅଭାବରେ ଉଦ୍ଭିଦ ସୁସ୍ଥ ରହିପାରେ ନାହିଁ । କୀଟନାଶକ ଏହି ସାହାଯ୍ୟକାରୀ ଜୀବମାନଙ୍କୁ ମାରି ଦିଏ ।

ଯଦି ଆପଣ ସୁସ୍ଥ ଫସଲ ଆଶା କରୁଛନ୍ତି, ତେବେ ଆପଣଙ୍କ ମାଟି ବିଷୟରେ ଚିନ୍ତା କରନ୍ତୁ ।

**ସୁସ୍ଥ ମାଟି ଚାଷୀର ବଡ଼ ହତିଆର**

ମାଟିରେ ଅଧିକ ଜୈବିକ ଅଂଶ (ଖଡିର) ଥିଲେ ଏହା ଫସଲକୁ ଯଥେଷ୍ଟ ପୋଷଣ ଯୋଗାଇ ଅଧିକ ଚାପ ସହିବାର କ୍ଷମତା ଦିଏ । ଏହି ଅବସ୍ଥାରେ ଅଧିକ ପୋଷକଯୁକ୍ତ ଓ ଅଧିକ ପରିମାଣର ଅମଳ ମିଳିଥାଏ ।

**ଆପଣଙ୍କ ମାଟି ଓ ଫସଲ ଉପରେ ଜୈବିକ ଉପାଦାନର କେତୋଟି ପ୍ରଭାବ:**

୧. ପାଣି ସଂରକ୍ଷଣ

- ମାଟି ଦାନା ଭିତରେ ଫାଙ୍କର ଆକାର ବଢ଼ାଇଥାଏ । ଫଳରେ ବର୍ଷା ସମୟରେ ଅଧିକ ପାଣି ଶୋଷିହେବା ସହ ମାଟି କ୍ଷୟ କମିଥାଏ ।
- ମାଟିର ପାଣିଧାରଣ କ୍ଷମତା ବଢ଼ାଇଥାଏ ।
- ମାଟିର ତାପମାତ୍ରା କମ ରଖେ, ଫଳରେ ବାଷ୍ପୀଭବନ କମିଥାଏ ।

୨. ମାଟିର ଗଠନରେ ଉନ୍ନତି

- ମାଟିର ଘନତା କମାଇଥାଏ ଏବଂ ଚେର ପଶିବା ବଢ଼ାଇଥାଏ । ମରୁଡ଼ି ସହନଶୀଳତା ସହ ଫସଲ ବଢ଼ିଥାଏ ।
- କର୍ଷଣ କାମ ସହଜ ଓ ଶୀଘ୍ର ହୋଇଥାଏ ।
- ବର୍ଷା ପରେ ମାଟିରେ ସହଜରେ କାମ କରିହୁଏ, ତେଣୁ ଅନାବନା ଘାସ ନିୟନ୍ତ୍ରଣ ଭଲ ହୁଏ ।
- ମଞ୍ଜି ଅଙ୍କୁରଣ ହାର ବଢ଼ିଥାଏ ।
- ମାଟି ଫାଟିବା କମିଯାଏ, ଚେର ଓ ଭିତର ମାଟିକୁ ଶୁଖିଲା ପବନ କମ୍ ଛୁଏଁ ।

୩. ଉର୍ବରତା ବଢ଼ାଏ

- ମାଟିର ଅମ୍ଳୀୟତାକୁ ସନ୍ତୁଳିତ କରିବାରେ ସାହାଯ୍ୟ କରେ ଏବଂ ଉଦ୍ଭିଦକୁ ଯଥେଷ୍ଟ ପୋଷକ ଯୋଗାଇଥାଏ ।
- ମାଟିକୁ ଯବକ୍ଷାରଜାନ ଓ ପଟାସିଅମ୍ ଆଦି ଖଣିଜ ଯୋଗାଇଥାଏ ।
- ମାଟିରେ ଯବକ୍ଷାରଜାନ ବିବନ୍ଧନ କରୁଥିବା ଅଣୁଜୀବଙ୍କୁ ଉତ୍ସାହିତ କରିଥାଏ ।
- ସୂକ୍ଷ୍ମ ପୋଷକତତ୍ତ୍ୱ ଯୋଗାଇବା ସହ ମାଟିର ସର୍ବାଙ୍ଗୀନ ଉନ୍ନତି କରାଇଥାଏ ।
- ପୋଷକଗୁଡ଼ିକର ଧୋଇହୋଇଯିବା କମାଏ ।

୪. କୀଟ କମାଏ

- ରୋଗ କରୁଥିବା କୀଟ ଓ ଜୀବଙ୍କ ସହ ପ୍ରତିଯୋଗିତା କରୁଥିବା ଅଣୁଜୀବମାନଙ୍କର ବିକାଶରେ ସହାୟକ ହୁଏ ।
- ଜୈବିକ ପଦାର୍ଥର ବିଘଟନରେ ସୃଷ୍ଟି ହେଉଥିବା ବାଷ୍ପ କେତେକ ରୋଗାଣୁଙ୍କ ପାଇଁ ବିଷାକ୍ତ ।
- ଉଦ୍ଭିଦର ବୃଦ୍ଧିରେ ସନ୍ତୁଳନ ଆଣିବା ସହ କୀଟ ସହନ କ୍ଷମତା ବଢ଼ାଇଥାଏ ।

ହଳ କରି ମାଟିରେ ମିଶାଇବା



ଖାଦ୍ୟ - ଖତ



କମ୍ପୋଷ୍ଟ



ଛାଦନ



**ସୁସ୍ଥମାଟି ପାଇଁ ଜୈବିକ ପଦାର୍ଥ ଆବଶ୍ୟକ**

ପ୍ରାକୃତିକ ସାର କେବଳ ପୋଷକ ଯୋଗାଇ ନଥାଏ, ଜୈବିକ ପଦାର୍ଥ ମଧ୍ୟ ଯୋଗାଏ । ଏହା ମାଟିର ରୂପ ବିନ୍ୟାସକୁ ଉନ୍ନତ କରିଥାଏ । ଏହା ପାଇଁ କିଛି ବାଟ ହେଉଛି:

- ଫୋପଡ଼ା ହୋଇଯାଉଥିବା ଜୀବଜନ୍ତୁଙ୍କ ଖତ ଓ କମ୍ପୋଷ୍ଟ ଭଳି ଅନ୍ୟକୃଷି ଉପଜାତ ଦ୍ରବ୍ୟର ବ୍ୟବହାର କରିବା
- ଆଜୋଲା ଭଳି ସବୁଜ ଖତ ଓ ଜୈବଉର୍ବରକ ଏବଂ ଯବକ୍ଷାରଜାନ ବିବନ୍ଧନକାରୀ ଅଣୁଜୀବ ବ୍ୟବହାର କରିବା ଦ୍ୱାରା ଅନ୍ୟ ସବୁ ଉଦ୍ଭିଦ ଲାଭ ପାଇବେ ।
- ଶିମ୍ବି ଫସଲ କଲେ ଏହା ମଣିଷ ପାଇଁ ଅତିରିକ୍ତ ଖାଦ୍ୟ ଯୋଗାଏ, ଗୃହପାଳିତ ପଶୁଙ୍କ ଖାଦ୍ୟ ହୁଏ କିମ୍ବା ଅନ୍ୟ କେଉଁ କାମରେ ଲାଗିପାରେ ।

ମାଟିକୁ ଉଦ୍ଭିଦ ଅଂଶ ଫେରିପାରିବ:

- ହଳ କରି ଉଦ୍ଭିଦର ବିଭିନ୍ନ ଅଂଶକୁ ସିଧାସଳଖ ମାଟିରେ ମିଶାଇ ଦେଲେ ।
- ଛାଦ (ମଲ୍‌ଚ) ରୂପରେ ଏହାକୁ ବ୍ୟବହାର କଲେ ।
- ପଶୁଙ୍କୁ ଖୁଆଇ ତାଙ୍କ ଦ୍ୱାରା ହଜମ କରାଇଲେ ।
- କମ୍ପୋଷ୍ଟ କରିବା ଦ୍ୱାରା ।

**ସଠିକ୍ ଜଳ ସଂଚାଳନା ମାଟିକୁ ସୁସ୍ଥ ରଖେ**

ଉଦ୍ଭିଦ ବହୁତ ପରିମାଣରେ ପାଣି ଆବଶ୍ୟକ କରେ ଏବଂ ଏହାକୁ ବ୍ୟବହାର କରି ଶୀଘ୍ର ବଢ଼ିବା ସହ ସୁସ୍ଥ ରହେ । ସଠିକ ଜଳ ସଂଚାଳନା ମାଟିକୁ ସୁସ୍ଥ ରଖେ ।

ପୋଖରୀ ବା କୃତ୍ରିମ ଜଳାଶୟ ଦ୍ୱାରା ବର୍ଷର ଶୁଖିଲା ସମୟ ପାଇଁ ପାଣିକୁ ସଂଗ୍ରହ କରି ରଖାଯାଇ ପାରିବ । ବାଷ୍ପୀଭବନ କମାଇବା ପାଇଁ ଛାଇ ବଢ଼ାଇବାର ଓ ପବନ ଗତିକୁ ବାଧାଦେବାର ବ୍ୟବସ୍ଥା କରିହେବ ।

ମାଟି ଉପରେ ଛାଦ ବିଛାଇଲେ ତାହା ମାଟିରେ ଜଳୀୟବାଷ୍ପ ରହିବାରେ ସାହାଯ୍ୟ କରେ । ମାଟିରେ ଅଧିକ ପରିମାଣରେ ଜୈବିକ ଅଂଶ ରହିଥିଲେ ତାହା ମଧ୍ୟ ପାଣିକୁ ଅଧିକ ସମୟ ଧରି ରଖିପାରେ ।



---

**ପଦକ୍ଷେପ ପାଇଁ!**



ମାଟିର ଉର୍ବରତା ବଢ଼ାଇବା ପାଇଁ, ପାଣିର ଉପଯୁକ୍ତ ବ୍ୟବହାର ପାଇଁ ଏବଂ ମାଟିକୁ ଉଦ୍ଭିଦ ଉପାଦାନ ଫେରାଇବା ପାଇଁ କରାଯାଉଥିବା ବ୍ୟବସ୍ଥା ଗୁଡ଼ିକର ତାଲିକା କରନ୍ତୁ ।

ଆପଣଙ୍କ ଅଞ୍ଚଳରେ କେଉଁ ବ୍ୟବସ୍ଥା ବେଶୀ ଫଳପ୍ରଦ ?

---

**ଛୋଟ ଜମି ପାଇଁ ସବୁଜଖତ ଫସଲ**

ସବୁଜଖତ ଫସଲ ହେଉଛି ସେହି ଫସଲ ଯାହାକୁ ଜମିରେ ଚାଷ କରାଯାଏ ଏବଂ ମାଟିର ଉର୍ବରତା ବଢ଼ାଇବା ପାଇଁ କ୍ଷେତମାଟିରେ ହିଁ ମିଶାଇ ଦିଆଯାଏ । ଏଗୁଡ଼ିକ ଅନ୍ତର୍ବର୍ତ୍ତୀ ଚାଷ ବା ପର୍ଯ୍ୟାୟ ଚାଷର ଗୋଟିଏ ଅଂଶ ମଧ୍ୟ ହୋଇପାରିବ । ଶିମ୍ବିଜାତୀୟ ସବୁଜଖତ ଫସଲ ସହିତ ରାଇଜୋବିଅମ୍ ଏକାଠି ରହିଥାଏ । ତେଣୁ ଏହି ଫସଲ ଚାଷ କଲେ ସବୁଜଖତ ମିଳିବା ସହିତ ବାୟୁମଣ୍ଡଳରୁ ଯବକ୍ଷାରଜାନ ବିବନ୍ଧନ ହୁଏ ଏବଂ ଅଧିକ ଲାଭ ମିଳିପାରେ । ଏହି ବ୍ୟବସ୍ଥା ତଳ ତାଲିକା ଭଳି ଅନେକ ସୁବିଧା ଦିଏ -

- ମାଟିକୁ ବହୁ ପରିମାଣର ଯବକ୍ଷାରଜାନ ଯୋଗାଇଥାଏ ।
- ମାଟିରେ ଜୈବିକ ପଦାର୍ଥ ମିଶାଏ ।
- ବଢୁଥିବା ଜାଗାରେ ହିଁ କାମରେ ଲାଗେ, ତେଣୁ ବୁହାଅଣା କରିବାକୁ ପଡ଼େ ନାହିଁ । ଅନ୍ୟ ପକ୍ଷରେ କମ୍ପୋଷ୍ଟ ବା ରାସାୟନିକ ସାରକୁ ସେସବୁର ତିଆରି ଜାଗାରୁ ବୋହିବାକୁ ପଡ଼ିଥାଏ ।
- ମାଟିକୁ ଛାଇ ଯୋଗାଇବା ଫଳରେ ମାଟିର ଆର୍ଦ୍ରତା ଓ ଜୈବିକ ଅଂଶ ସଂରକ୍ଷିତ ହୋଇ ରହେ ।
- ପବନରେ ଉଡ଼ିଯାଇ ଅବକ୍ଷୟରୁ ମାଟିକୁ ରକ୍ଷାକରେ ।
- ଜୀବଜନ୍ତୁଙ୍କ ପାଇଁ ଉଚ୍ଚ ପୁଷ୍ଟିସାରଯୁକ୍ତ ଖାଦ୍ୟ ଯୋଗାଏ ।
- କେତେକ ଜାତିର ବିନ୍, ମଟର ଆଦି ପରିବାରକୁ ମଧ୍ୟ ଖାଦ୍ୟ ଯୋଗାଏ ।
- ଅର୍ଥ ରୋଜଗାରର ସୁବିଧା ଦିଏ ।
- ମୌଳିକ ଶସ୍ୟ ସହ ଅନ୍ତର୍ବର୍ତ୍ତୀ ଫସଲ ଚାଷ କଲେ ତାହା ଅନାବନା ଘାସ ରୋକିବାରେ ସାହାଯ୍ୟ କରେ ।

**ଆଜୋଲା ବା ଘୋଡ଼ାଦଳ**

ସବୁଜଖତ ଭାବରେ ବ୍ୟବହାର ପାଇଁ ବହୁତ ପ୍ରକାର ଫସଲ ରହିଛି । ଧାନ ପାଇଁ ସବୁଠୁ ଜଣାଶୁଣା ସବୁଜ ଖତ ହେଉଛି ଆଜୋଲା ବା ଘୋଡ଼ାଦଳ । ଆଜୋଲା ଗୋଟିଏ ଛୋଟ ଫର୍ଣ୍ଣ ଏବଂ ଏହା ପାଣି ବା ଓଦାମାଟିରେ ବଢ଼ିଥାଏ । ଏହା ମାତ୍ର ୩ରୁ ୫ ଦିନ ମଧ୍ୟରେ ନିଜ ଓଜନର ଦୁଇଗୁଣ ହୋଇଯାଏ । ଉପଯୁକ୍ତ ପରିବେଶରେ ୫ କି.ଗ୍ରା ପରିମାଣର ମୂଳ ଆଜୋଲା ମାତ୍ର ୧୦୦ ଦିନରେ ୧ରୁ ୧୫ ଟନ୍ ଓଜନର ଜୈବ ଉପାଦାନ ହୋଇଯାଏ । ଏହାର ୬ଟି ବିଭିନ୍ନ ପ୍ରଜାତି ରହିଛି ।

ଆଜୋଲା ଗୋଟିଏ ଉତ୍କୃଷ୍ଟ ସାର ହୋଇପାରିବ । କାରଣ ଏଥିରେ ବ୍ୟାକ୍ଟେରିଆର ଉପଯୁକ୍ତ ମିଶ୍ରଣ ରହିଥିବାରୁ ତାହା ଯବକ୍ଷାରଜାନ, ପଟାସିଅମ୍ ଓ ଅନ୍ୟ ସୂକ୍ଷ୍ମପୋଷକ ତତ୍ତ୍ୱର ଯୋଗାଣ ବଢ଼ାଇଥାଏ । ଏହାର ଜୈବପିଣ୍ଡର ପରିମାଣ ବେଶ୍ ଅଧିକ, ତେଣୁ ମାଟିର ଜୈବିକ ଅଂଶକୁ ଏହା ନାଟକୀୟ ଭାବରେ ବଢ଼ାଇପାରେ । ଏହା ବେଶୀ ବଢ଼ିପାରୁଥିବାରୁ ଅନାବନା ଘାସର ବୃଦ୍ଧିକୁ ମଧ୍ୟ କମାଇଦିଏ ।





**ପଦକ୍ଷେପ ପାଇଁ!**

**ଆପଣଙ୍କ ଅଞ୍ଚଳରେ ଚାଷୀମାନେ ସବୁଜଖତ ଚାଷ କରି ବ୍ୟବହାର କରୁଛନ୍ତି କି ?**

**କୃଷି ସଂପ୍ରସାରଣ ଅଧିକାରୀମାନେ ଏହାର ବ୍ୟବହାର ବିଷୟରେ ଶିଖାଇଛନ୍ତି କି ?**

**ଆପଣଙ୍କ ଅଞ୍ଚଳ ପାଇଁ କେଉଁ ପ୍ରକାରର ସବୁଜଖତ ଭଲ ତାହା ଖୋଜନ୍ତୁ ?**

**ଏହାକୁ ଆପଣଙ୍କ ଚାଷ ପଦ୍ଧତିରେ ଯୋଡ଼ି ପାରିବେ କି ?**



ସମନ୍ୱିତ କୃଷି

**ପଶୁ ପାଳନ ଆପଣଙ୍କ ମାଟିକୁ ଉର୍ବର କରିପାରିବ**

କୌଣସି ଗୋଟିଏ ଫସଲ ଉତ୍ପାଦନ କରିବା ବଦଳରେ ସମନ୍ୱିତ କୃଷିରେ ଉଦ୍ଭିଦ, ଗଛ, ଓ ପଶୁ ଆଦିଙ୍କୁ କ୍ଷେତରେ ଏକାଠି ବଢ଼ାଯାଏ । ଏହା ଚାଷୀକୁ ଅନେକଗୁଡ଼ିଏ ଉତ୍ପାଦ ଯୋଗାଏ ଯାହାକି ତାକୁ ଆତ୍ମନିର୍ଭରଶୀଳ ହେବାରେ ସାହାଯ୍ୟ କରେ ।

ସମନ୍ୱିତ କୃଷି ପରିବାରକୁ ଅଧିକ ପୁଷ୍ଟିସାରଯୁକ୍ତ ଖାଦ୍ୟ ସହ ଉନ୍ନତମାନର ଖାଦ୍ୟ ଯୋଗାଇପାରେ ।

ଗାଈ, ଛେଳି, କୁକୁଡା, ଏପରିକି ମାଛଠାରୁ ଆସୁଥିବା ପ୍ରାଣୀମଳ ଖତ ଆପଣଙ୍କ ମାଟିକୁ ଉର୍ବର କରିବା ପାଇଁ ଖୁବ୍ ଭଲ । ଏହା ନିଜ କ୍ଷେତରେ ହିଁ ମିଳିବା ସହିତ ମାଟିକୁ ପ୍ରଦୂଷଣମୁକ୍ତ ରଖେ ।



**ପଦକ୍ଷେପ ପାଇଁ।**

**ପାଳିତ ପଶୁଙ୍କଠାରୁ ଆପଣ ଯେତେ ଲାଭ ପାଇବା କଥା ତାହା ପାଉଛନ୍ତି କି ନାହିଁ ସେ ବିଷୟରେ ଆଲୋଚନା କରନ୍ତୁ । ଆପଣଙ୍କ ଅଞ୍ଚଳରେ କେଉଁ ପ୍ରକାରର ଚାଷ ବ୍ୟବସ୍ଥା ଫଳପ୍ରଦ ହୋଇଛି ସେଗୁଡ଼ିକୁ ଚିହ୍ନଟ କରନ୍ତୁ ।**

**ପାଳିତ ପଶୁଙ୍କ ପାଇଁ ସ୍ଥାନୀୟ ଉପାଦାନରୁ ସୁଲଭ ଖାଦ୍ୟ ତିଆରି**

ଅନେକ ସ୍ଥାନୀୟ ପଦାର୍ଥ ପାଳିତ ପଶୁଙ୍କ ପାଇଁ ଖାଦ୍ୟ ଭାବରେ ବ୍ୟବହାର କରିହେବ । ଧାନର କୁଣ୍ଡା, ଖୁଦ, ନଡ଼ିଆ ପିଡ଼ିଆ, ଶାମୁ ପତ୍ର, ଛୋଟ ଛୋଟ କରି କଟା ହୋଇଥିବା କଦଳୀଗଣ୍ଡି, ଭୂମିଶାମୁକା ଖୋଳ, ଚଲା ହୋଇଥିବା ରୋଷେଇଘର ପାଉଁଶ, କଳା ଗୁଡ଼, ଚିଙ୍ଗୁଡ଼ିମୁଣ୍ଡ, କନ୍ଦମୂଳ ପତ୍ର, ଅଧିକ ପାଚି ଯାଇଥିବା ଫଳ, ଆଜୋଲା ବା ଘୋଡ଼ାଦଳ, ସୋୟାବିନ୍‌ର ବଳକା ଅଂଶ ଆଦି ଏଭଳି କିଛି ଜିନିଷ ।



---



**ପଦକ୍ଷେପ ପାଇଁ!**

**ଆପଣଙ୍କ ଅଞ୍ଚଳର ଚାଷୀମାନେ ତାଙ୍କର ପାଳିତ ପଶୁଙ୍କ ଖାଇବା ପାଇଁ କ'ଣ ସବୁ ସ୍ଥାନୀୟ ଉପାଦାନ ଦେଉଛନ୍ତି ?**

**ସେ ସବୁର ଗୋଟିଏ ତାଲିକା କରନ୍ତୁ ।**

**ବିଭିନ୍ନ ଉପାଦାନକୁ ମିଶାଇ ଖାଦ୍ୟ ଭାବରେ ପରୀକ୍ଷା କରନ୍ତୁ । ବିଭିନ୍ନ ମିଶ୍ରଣର ଫଳାଫଳକୁ ତୁଳନା କରନ୍ତୁ ।**

**ଯଦି ସମ୍ଭବ ଅଭିଜ୍ଞ ଚାଷୀ, ବେସରକାରୀ ଅନୁଷ୍ଠାନ ବା ସରକାରୀ ଅଧିକାରୀଙ୍କଠାରୁ ଉପଦେଶ ନିଅନ୍ତୁ ।**

---



**ଧାନବିଲ ହୁଡ଼ାରେ ଖାଦ୍ୟ, ଗୋଖାଦ୍ୟ, ସବୁଜସାର ଓ ଜାଳେଣି ବଢ଼ାଯାଇ ପାରିବ**

ଧାନ କିଆରିର ଚାରିପାଖରେ ଥିବା ହୁଡ଼ାରେ ଛୋଟ ବା ବଡ଼ ଗଛ ଲଗାଇଲେ ଅନେକ ପ୍ରକାର ଲାଭ ପାଇହେବ:

**ସମୟ ଓ ପରିଶ୍ରମ ବଞ୍ଚିବ**

- ଦୂର ଜାଗାକୁ ଯାଇ ଜାଳେଣି ସଂଗ୍ରହ କରିବା ବା ପଶୁଖାଦ୍ୟ ଆଣିବା ବଦଳରେ ଚାଷୀ ନିଜ ଜମିରୁ ଏଗୁଡ଼ିକ ପାଇପାରିବ । ଯେଉଁଠି ଦରକାର ଠିକ୍ ସେଠି ହିଁ ସାର ମଧ୍ୟ ଉତ୍ପାଦନ କରାଯାଇପାରିବ ।

**ଜାଗା ବଞ୍ଚିବ**

- ହୁଡ଼ାରେ ଚାଷ କରିବା ଅଧିକ ଖଣ୍ଡେ ଜମି ପାଇବା ସହ ସମାନ ।

**ଖାଦ୍ୟ**

- କଦଳୀ: ଧାର ଓ ନାଳ ପାଖରେ ଏହାକୁ ଲଗାଯାଇ ପାରେ । ଏହା ମଣିଷ, ଘୁଷୁରି ଓ ଗାଈଗୋରୁଙ୍କୁ ଖାଦ୍ୟ ଯୋଗାଏ ଏବଂ ଧାନ ଚାଷ ପାଇଁ ପବନ ଗତିବାଧକ ଭାବରେ କାମ କରିଥାଏ ।

- ହରଡ଼: ଶୁଖିଲା ଋତୁସାରା ଚାଷ ହେବା ସହ ପଶୁମାନଙ୍କ ପାଇଁ ଉତ୍ତମ ପୁଷ୍ଟିସାରଯୁକ୍ତ ଖାଦ୍ୟ ଯୋଗାଇଥାଏ ।

**ଗୋଖାଦ୍ୟ**

- ଚାଷ କାମ ବା ଗାଡ଼ି ବୋହିବାରେ ଲାଗୁଥିବା ପ୍ରାଣୀଙ୍କୁ ସାଧାରଣତଃ ଚରିବା ପାଇଁ ଦିନ ବେଳେ ଯଥେଷ୍ଟ ସମୟ ମିଳେ ନାହିଁ । ତେଣୁ ତାଙ୍କ ପାଇଁ ଆବଶ୍ୟକ ହେଉଥିବା ସବୁ ଖାଦ୍ୟ ସେମାନେ ପାଇପାରନ୍ତି ନାହିଁ । ହୁଡ଼ାରେ ଘାସ ଲଗାଇଲେ ଏହି ପଶୁମାନେ ସେଠାରେ ରାତିରେ ଚରି ଖାଇପାରିବେ । ହୁଡ଼ାରେ ଶିମ୍ବିଜାତୀୟ ଗଛ ଲଗାଇଲେ ଶୁଖିଲା ଋତୁରେ ମଧ୍ୟ ପୁଷ୍ଟିସାରଯୁକ୍ତ ଖାଦ୍ୟ ମିଳିପାରିବ ।
- ଅନେକଗୁଡ଼ିଏ ଶୀଘ୍ର ବଢ଼ିପାରୁଥିବା ଗଛ, ବୁଦା ଓ ଘାସ ହୁଡ଼ାରେ ଲଗାଇଲେ ବେଶ୍ ଭଲ ଗୋଖାଦ୍ୟ ମିଳିପାରିବ ।

**ସାର**

- ଏସିଆରେ ଧାନ କିଆରିର ହୁଡ଼ା ବା ଖାଲି ଜାଗାରେ ଯବକ୍ଷାରଜାନ ବିବନ୍ଧନ କରୁଥିବା ଗଛ ଲଗାଇ ଆସୁଛନ୍ତି । ଫଳରେ ଏହା ୟୁରିଆର ଆବଶ୍ୟକତା ବହୁ ପରିମାଣରେ କମାଇ ଦେଇଛି ।
- ୟୁରିଆ ପାଇଁ ଲଗାହୋଇଥିବା ଗଛ ମଧ୍ୟ ଗୋଖାଦ୍ୟ ଯୋଗାଇ ପାରିବ ।
- ହୁଡ଼ାରେ ସବୁଜଖତ ଫସଲ ଚାଷ କରି ତା'ର ମଞ୍ଜିସଂଗ୍ରହ କରି ଧାନ ଅମଳ ପରେ ଚାଷ ଜମିରେ ବୁଣାଯାଇ ପାରିବ ।

**ଜାଳେଣି**

- ସାର ଓ ଗୋଖାଦ୍ୟ ପାଇଁ ଲଗାହୋଇଥିବା ଗଛରୁ ଜାଳେଣି ମଧ୍ୟ ମିଳିପାରିବ । ଫିଲିପାଇନ୍‌ସ୍‌ର କେଭିଟ୍ ଠାରେ ପ୍ରତି ଦୁଇ ବର୍ଷ ବ୍ୟବଧାନରେ ୭ଟି ଗଛରୁ କାଠ ଅମଳ କଲେ ୨ଟି ପରିବାର ପାଇଁ ଯଥେଷ୍ଟ ଜାଳେଣି ମିଳିଥାଏ ।
- ଗଛଗୁଡ଼ିକ ହୁଡ଼ାରେ ବାଡ଼ଖୁଣ୍ଟ ପରି କାମ କରିଥାନ୍ତି ।
- ନିମ୍ବ ପରି କେତେଗୁଡ଼ିଏ ଗଛ ଉଦ୍ଭିଦୀୟ କୀଟନାଶକ ପରି ମଧ୍ୟ କାମ କରିଥା'ନ୍ତି ।

**ମୃତ୍ତିକାକ୍ଷୟ ନିୟନ୍ତ୍ରଣ**

- ଚେର ହୁଡ଼ାର ମାଟିକୁ ଭିଡ଼ି ରଖିଥିବା ଯୋଗୁଁ ପ୍ରବଳ ବର୍ଷା ହେଲେ ମଧ୍ୟ ମାଟି ଧୋଇ ହୋଇଯାଏ ନାହିଁ ।

**କୀଟ ସଂଚାଳନା**

- ନିମ୍ବ ପରି କେତେକ ଗଛ ଉଦ୍ଭିଦୀୟ କୀଟନାଶକର କାମ କରିଥା'ନ୍ତି ।
- ଅନ୍ୟମାନେ କୀଟ ନିୟନ୍ତ୍ରଣ କରିପାରୁଥିବା ଉପକାରୀ କୀଟଙ୍କୁ ପ୍ରାକୃତିକ ବାସସ୍ଥଳୀ ଯୋଗାଇଥା'ନ୍ତି ।

**ଦାମିକା ଉପାଦାନର ବ୍ୟବହାର କମାଇହେବ**

ଚାଷଜମିରେ ବ୍ୟୟବହୁଳ ବିଷାକ୍ତ ରାସାୟନିକର ବ୍ୟବହାର କମାଇବା ପାଇଁ ଅନେକଗୁଡ଼ିଏ କୌଶଳ ରହିଛି । ସେଗୁଡ଼ିକ ହେଉଛି ଅନ୍ତର୍ବର୍ତ୍ତୀ ଚାଷ, ଥାକଚାଷ, ଛାଦନ, ଜିଆଚାଷ (କମ୍ପୋଷ୍ଟ ପାଇଁ ଜିଆଙ୍କ ବଂଶବୃଦ୍ଧି) ଏବଂ କମ୍ପୋଷ୍ଟ କରିବା ଆଦି । ଏଗୁଡ଼ିକ ଗୋଟିଏ ସମନ୍ୱିତ, ଚିରନ୍ତନ, ଆତ୍ମନିର୍ଭରଶୀଳ କୃଷି ବ୍ୟବସ୍ଥାର ଅଂଶ ହୋଇପାରିବେ ।

ଉଦାହରଣ ସ୍ୱରୂପ, ଛାଦନ ବର୍ଷା ସମୟରେ ମୂଲ୍ୟବାନ ଉପର ମାଟିକୁ ଧୋଇ ଧୋଇଯିବାରୁ ରକ୍ଷା କରେ । ଶୁଖିଲା ଦିନରେ ଏହା ମାଟିର ଆର୍ଦ୍ରତାକୁ ଧରିରଖେ ଏବଂ ଅନାବନା ଗଛ ବଢ଼ିବାକୁ ଦିଏ ନାହିଁ ।

କେତେ ଚାଷୀ ଗରମ ପାଣି ବ୍ୟବହାର କରି ଅନାବନା ଘାସ ଓ କୀଟଙ୍କୁ ନିୟନ୍ତ୍ରଣ କରି ପାରିଛନ୍ତି ।



---



**ପଦକ୍ଷେପ ପାଇଁ।**

**ଆପଣଙ୍କ ଅଞ୍ଚଳରେ ଚାଷୀମାନେ ରାସାୟନିକ ଉପାଦାନର ଆବଶ୍ୟକତାକୁ କମାଇବା ପାଇଁ ବ୍ୟବହାର କରୁଥିବା ବିଭିନ୍ନ ବ୍ୟବସ୍ଥାର ତାଲିକା କରନ୍ତୁ ।**

**ଏସବୁ ଭିତରୁ କେଉଁ କୌଶଳଟି ସବଠାରୁ ବେଶୀ ଫଳପ୍ରଦ ?**

**ସେଥିରୁ କେଉଁ ବ୍ୟବସ୍ଥାକୁ ଆପଣ ନିଜ କ୍ଷେତରେ ଲଗାଇପାରିବେ ?**

---

**ଥାକ ଚାଷ ବା ପାହାଚ ଚାଷ**

ପାହାଡ଼ିଆ ଅଞ୍ଚଳରେ ଥାକ ଚାଷ କରାଯାଇପାରେ । ଫସଲଗୁଡ଼ିକୁ ପାହାଡ଼ର ଢାଲୁ ଉପରେ ଆଡ଼ ବାଗରେ ଲଗାଯାଏ । ଏହା ଯୋଗୁଁ ଅନେକ ପ୍ରକାରର ଲାଭ ହୁଏ :

- ମାଟି ଧୋଇଯିବାରୁ ରକ୍ଷା ମିଳେ ।
- ମାଟିର ପାଣି ସଂରକ୍ଷିତ ହୋଇ ରହେ ।
- ମାଟିର ଉର୍ବରତା ଫେରିଆସେ ।
- ଗୋଟିଏ ପାରିବେଶିକ ସୁସ୍ଥ କୃଷି ବ୍ୟବସ୍ଥା ତିଆରି ହୋଇଥାଏ ।
- କୃଷିରୁ ବିବିଧ ରୋଜଗାର ମିଳିପାରେ ।
- ଅମଳ ବଢ଼େ ଏବଂ ସେଥିରୁ ନଗଦ ରୋଜଗାର ବଢ଼ିଥାଏ ।
- ଅନ୍ତର୍ବର୍ତ୍ତୀ ଫସଲ ଉପୁଜାଇଲେ ପରିବାରକୁ ପୁଷ୍ଟିକର ଖାଦ୍ୟ ମଧ୍ୟ ମିଳିପାରେ ।



**ପଦକ୍ଷେପ ପାଇଁ!**



ଥାକ ଚାଷ କରିବା ପାଇଁ କି ପ୍ରକାର ହାତହତିଆର ଆବଶ୍ୟକ ?

ସମୋଚ୍ଚ ରେଖା ଆଙ୍କିବାର ଧାରା ଆପଣ ଜାଣନ୍ତି କି, ତାହା ଯେପରି ପାଣି ବହିବାର ଦିଗ ପ୍ରତି ଅଭିଲମ୍ବ ହେବ ତଥା ସବୁ ବିନ୍ଦୁରେ ସମାନ ଉଚ୍ଚତାରେ ରହିବ ?

# ଆଗକୁ ବାଟ

**ଚାଷୀମାନେ ଏକାଠି ହୋଇ ନୂଆ ବାଟ ଶିଖିପାରିବେ**

ଚାଷୀମାନେ ସାଧାରଣତଃ ବେଶ୍ ଅଭିଜ୍ଞ, କିନ୍ତୁ ଧନୀ ନୁହନ୍ତି । ଚାଷ କାମ ଉପରେ ତାଙ୍କ ପରିବାରର ଭରଣ ପୋଷଣ ନିର୍ଭର କରେ । ତେଣୁ ଚାଷରେ କିଛି ବିକଳ୍ପ ବ୍ୟବସ୍ଥାର ଉପଯୋଗ କରିବା ପୂର୍ବରୁ ସେମାନେ ନିଶ୍ଚିତ ହେବାକୁ ଚାହାନ୍ତି ଯେ ତାହା କାମ କରିବ ଏବଂ ପରିବାରର ରୋଜଗାର ଉପରେ ବିପଦ ଆଣିବ ନାହିଁ । ରାସାୟନିକ ବିଷ ସବୁକୁ ସମ୍ପୂର୍ଣ୍ଣ ଭାବରେ ଦୂରାଇଦେବା ଆମର ଶେଷ ଲକ୍ଷ୍ୟ ହେଲେ ବି ତାହା ହଠାତ୍ କରିହେବ ନାହିଁ । ତେଣୁ ବିଭିନ୍ନ ବିକଳ୍ପ ବ୍ୟବସ୍ଥା ମାଧ୍ୟମରେ କରି କୀଟନାଶକର ବ୍ୟବହାର ଧୀରେ ଧୀରେ କମାଯାଇପାରିବ ।

ଅନେକ ଦଳଙ୍କ ପାଇଁ କିଛି ନୂଆ କଥା ଶିଖିବାର ଭଲ ବାଟ ହେଉଛି ଅଭିଜ୍ଞ ମଣିଷଙ୍କର ସାହାଯ୍ୟ ନେବା । ତେଣୁ ବିକଳ୍ପ ଚାଷ ବ୍ୟବସ୍ଥା ବିଷୟରେ ଜ୍ଞାନ ଓ ଅଭିଜ୍ଞତା ଥିବା ଚାଷୀ ବା ଦଳଙ୍କୁ ପ୍ରଥମେ ଖୋଜିବାକୁ ହେବ ଯିଏ କି ଏମାନଙ୍କୁ ସାହାଯ୍ୟ କରି ପାରିବେ । ଏମାନଙ୍କୁ ନେଇ କେତେ ଅଞ୍ଚଳରେ ବିଭିନ୍ନ ବିକଳ୍ପ ବ୍ୟବସ୍ଥାର ପରୀକ୍ଷଣ କରିବା ଦରକାର । ସେଥିରୁ ଜାଣିହେବ କେଉଁ ବ୍ୟବସ୍ଥା କିପରି କାମ କରୁଛି । ଯଦି ଏକାଧିକ ଚାଷୀ ଏହି ପରୀକ୍ଷାରେ ଭାଗ ନେଉଥା'ନ୍ତି, ତେବେ ପ୍ରତ୍ୟେକେ ନିଜ ନିଜ ଜମିର ଖଣ୍ଡେ ଖଣ୍ଡେ ଛୋଟ ଅଞ୍ଚଳରେ ଏହା କରିପାରନ୍ତି ।

ତୁଳନାତ୍ମକ ମୂଲ୍ୟାୟନ କରିବା ସମୟରେ ଚାଷୀମାନେ ପ୍ରତ୍ୟେକ ଅଞ୍ଚଳ ପାଇଁ ହୋଇଥିବା ଖର୍ଚ୍ଚର ହିସାବ କରିବା ଆବଶ୍ୟକ । ବିହନ, କୀଟନାଶକ, ସାର ଆଦି ବିଭିନ୍ନ ପ୍ରକାରର ନିବେଶ, ହଳ କରିବା, ତଳି ପ୍ରସ୍ତୁତି, ଘାସ ବଛା ଆଦି ପରିଶ୍ରମର ମୂଲ୍ୟ, ପରିବହନ ଖର୍ଚ୍ଚ ଓ ଧାର ସବୁ କିଛିର ହିସାବ ନେବାକୁ ହେବ । ଏହା ପରେ ସେମାନେ ପ୍ରତ୍ୟେକ ଅଞ୍ଚଳରେ ହୋଇଥିବା ଅମଳ ଏବଂ ସେଥିରୁ ସେମାନଙ୍କର ବାସ୍ତବ ଆୟର ହିସାବ କରିବେ ।

**ସୁସ୍ଥ ଅବସ୍ଥାକୁ ଫେରିବା ପାଇଁ ଆପଣଙ୍କ ଜମିକୁ କିଛି ସମୟ ଲାଗିବ**

ମନେରଖନ୍ତୁ, ଆପଣଙ୍କ ତୁଳନାତ୍ମକ ପରୀକ୍ଷାମୂଳକ ଚାଷକୁ ବେଶ୍ କେତୋଟି ଫସଲ ଚକ୍ରରେ କରିବାକୁ ପଡ଼ିବ । କାରଣ ଆଗରୁ ନିୟମିତ କୀଟନାଶକ ବ୍ୟବହାର ଯୋଗୁଁ ମାଟି ଓ ମାଟିରେ ଥିବା ଜୀବଙ୍କ ଅବସ୍ଥା ବେଶ୍ ବଦଳି ଯାଇଥିବ ଏବଂ ତାହା ସାଧାରଣ ପ୍ରାକୃତିକ ଅବସ୍ଥାକୁ ଫେରିବା ପାଇଁ କିଛି ସମୟ ଲାଗିବ । ଶୂନ ବା ଅଳ୍ପ ରାସାୟନିକ ବ୍ୟବହାର କରୁଥିବା ବିକଳ୍ପ କୃଷିରେ କେବଳ ଗୋଟିଏ ପ୍ରକାର ଫସଲ ଚାଷ କରାଯାଏ ନାହିଁ । ତେଣୁ ବିଭିନ୍ନ ପରୀକ୍ଷାର ତୁଳନା ପାଇଁ ଏକ ଲମ୍ବା ସମୟ ଅବଧି ନେବା ଦରକାର । ଏଥିପାଇଁ ବହୁବାର୍ଷିକ ଫସଲ ନିଆଯାଇ ପାରିବ । ଯେଉଁ ବ୍ୟବସ୍ଥାଟି ଆପଣଙ୍କ ଗୋଷ୍ଠୀ ଓ ଅଞ୍ଚଳ ପାଇଁ ସବୁଠୁ ଭଲ ମନେହେବ, ତାକୁ ଶିଖିବା ପାଇଁ ଆପଣଙ୍କ ଦଳ ଭିତରେ ସମନ୍ୱୟ ଆଣିବାକୁ ପଡ଼ିବ ।

ତୁଳନା କରିବା ବେଳେ ବର୍ଷସାରା ନିୟମିତ ଭାବରେ ମିଳୁଥିବା ଖାଦ୍ୟ, ପଶୁଖାଦ୍ୟ ଓ ଜାଳେଣି ଭଳି ବିଭିନ୍ନ ବ୍ୟବହାରଯୋଗ୍ୟ, କିନ୍ତୁ ଆର୍ଥିକ ଆୟ ଦେଉନଥିବା, ଜିନିଷ ସବୁର ହିସାବ ମଧ୍ୟ କରିବାକୁ ହେବ । ଆହୁରି ମଧ୍ୟ ଗୋଟିଏ ସୁରକ୍ଷିତ ଓ ସୁସ୍ଥ ସମାଜର ଲାଭକୁ ମଧ୍ୟ ବିଚାର କରିବାକୁ ହେବ । ଏପରି ଏକ ସମାଜ ଯାହାକି ବାହ୍ୟ ବଜାରର ଚାପ ଓ କରଜରୁ ଏବଂ ଫସଲକୁ ପୂରା ଉଜାଡ଼ି ପାରୁଥିବା କୀଟ ସଂକ୍ରମଣର ଭୟରୁ ମୁକ୍ତ ରହିବ ।



**ନିଜ ଜମିରେ ଯାହା ଅଛି ତାକୁ ବୁଝନ୍ତୁ**

ସ୍ଥାନୀୟ ଜ୍ଞାନ ଓ ନିରୀକ୍ଷଣରୁ ନିରନ୍ତର କୃଷି ଆରମ୍ଭ ହୋଇଥାଏ ।

ଉଭୟ ପ୍ରାକୃତିକ ସହାୟକ ଓ କୀଟଙ୍କ ସଂଚାଳନା ପାଇଁ ନିଜ ଜମିରେ କ'ଣ ଅଛି ତାହା ଜାଣିବାକୁ ପଡ଼ିବ । ବିଭିନ୍ନ କୀଟଙ୍କୁ ଚିହ୍ନିବା, ସେମାନଙ୍କର ଜୀବନଚକ୍ର ତଥା ଚଳଣି - କ'ଣ ଖାଆନ୍ତି, କେଉଁଠି ରହନ୍ତି ଇତ୍ୟାଦି ଜାଣିବା ଜରୁରୀ । ଏସବୁ କଥା ଭଲକରି ଲକ୍ଷ୍ୟ କରିବା ଏବଂ ମିଳୁଥିବା ତଥ୍ୟକୁ ଟିପି ରଖିବା ଦରକାର । ତାହେଲେ ଲମ୍ବା ସମୟ ଧରି ଚାଲୁଥିବା ପରୀକ୍ଷଣର ଫଳାଫଳକୁ ବୁଝିବା ସମ୍ଭବ ହେବ ।

ପ୍ରତ୍ୟେକ ଗଛକୁ ଗୋଟି ଗୋଟି କରି ପରୀକ୍ଷା କରିବା ଦରକାର ନାହିଁ - ଅବଶ୍ୟ ଏହା ସମ୍ଭବ ମଧ୍ୟ ନୁହେଁ । ସବୁଠୁ ଭଲ ବାଟ ହେଉଛି ପ୍ରତ୍ୟେକ ଅଞ୍ଚଳରୁ ଏକ ନିର୍ଦ୍ଦିଷ୍ଟ ସଂଖ୍ୟକ ନମୁନା ଆଣିବା । କୌଣସି ଅଚିହ୍ନା କୀଟ ପାଇଲେ ତାକୁ ଗୋଟିଏ ବୋତଲରେ ଧରି ଅନ୍ୟମାନଙ୍କୁ ଦେଖାନ୍ତୁ । ମନେରଖନ୍ତୁ କୀଟ ଓ ମଣିଷଙ୍କ ସମୟ ଅଲଗା ଅଲଗା । ତେଣୁ ବେଳେ ବେଳେ ଆପଣଙ୍କୁ ରାତିରେ ବା ଅତି ସକାଳୁ ଫସଲ ଦେଖିବାକୁ ପଡ଼ିବ ।

କେବଳ ହାନିକାରକ କୀଟକୁ ଖୋଜନ୍ତୁ ନାହିଁ । ଅନ୍ୟ କୀଟମାନଙ୍କୁ ମଧ୍ୟ ଦେଖନ୍ତୁ, ଯେଉଁମାନେ କି ଏକାଠି ରହୁଥିବେ । ସେମାନଙ୍କ ରହିବା ଜାଗା ଏବଂ ଖାଦକ ଖୋଜନ୍ତୁ, ପାଖାପାଖି ପରିବେଶକୁ ଲକ୍ଷ୍ୟ କରନ୍ତୁ (ଛାଇ ଅଞ୍ଚଳ, ପାଣିଉତ୍ସ ଇତ୍ୟାଦି) ଏବଂ ପାଗ ବିଷୟରେ ମଧ୍ୟ ଟିପି ରଖନ୍ତୁ ।

---

**ପଦକ୍ଷେପ ପାଇଁ!**



**ଆପଣଙ୍କ ଫସଲକୁ ଭଲ ଭାବରେ ଲକ୍ଷ୍ୟ କରନ୍ତୁ । ଉଦାହରଣ ସ୍ୱରୂପ, ଗୋଟିଏ ଧାନ ଗଛ ଉପାଡ଼ି ଆଣନ୍ତୁ ଏବଂ ତା'ର କାଣ୍ଡ, ଚେର ବା ଲାଗିଥିବା ମାଟିରେ ଥିବା ପ୍ରତ୍ୟେକ କୀଟ ବା ଛୋଟକୃମି/ଜୀବଙ୍କୁ ଲକ୍ଷ୍ୟ କରି ଟିପି ରଖନ୍ତୁ ।**

**ମିଳୁଥିବା ସବୁ ଜୀବଙ୍କର ଗୋଟିଏ ତାଲିକା କରନ୍ତୁ ।**

**ଅନ୍ୟ ଚାଷୀଙ୍କୁ ଏକାଠି କରି ଏହା ବିଷୟରେ ଆଲୋଚନା କରନ୍ତୁ । ସେଗୁଡ଼ିକ ସାହାଯ୍ୟକାରୀ/ ଖାଦକ, ସମ୍ଭାବ୍ୟ ହାନିକାରୀ ବା କେବଳ ନିରୀହ କୀଟ ଚିହ୍ନନ୍ତୁ ।**

**ଯେଉଁ କୀଟଗୁଡ଼ିକ ଆପଣଙ୍କ ଚାଷ ଜମି ପାଇଁ କ୍ଷତିକାରକ, ସେଗୁଡ଼ିକର ଜୀବନ ଚକ୍ର ଓ ଚଳଣି ବିଷୟରେ ପ୍ରଥମେ ଜାଣନ୍ତୁ ।**

---

**ଚାଷୀ କ୍ଷେତ୍ର ବିଦ୍ୟାଳୟ**

ଚାଷୀ-କ୍ଷେତ୍ର-ବିଦ୍ୟାଳୟ ମାଧ୍ୟମରେ ପ୍ରାକୃତିକ କୀଟ ନିୟନ୍ତ୍ରଣ ଶିଖିବା ହେଉଛି ଗୋଟିଏ ବାଟ ।

ଚାଷୀ-କ୍ଷେତ୍ର-ବିଦ୍ୟାଳୟରେ ଆପଣଙ୍କ ନିଜ ଜମି ଆପଣଙ୍କ ଶ୍ରେଣୀ କୋଠରୀ ହୋଇଥାଏ ।

ଆପଣଙ୍କ ଜମିକୁ ଲକ୍ଷ୍ୟ କରିବାରୁ ଆରମ୍ଭ କରିପାରନ୍ତି । ସେଠି କେଉଁ ସବୁ କୀଟ ଅଛନ୍ତି? କେତେ ପରିମାଣରେ ସେମାନଙ୍କୁ କେଉଁଠି ଦେଖନ୍ତି? ସେମାନେ ଆପଣଙ୍କ ଫସଲକୁ ନଷ୍ଟ କରୁଛନ୍ତି କି ?

ବିଭିନ୍ନ ବାଟରେ ପରଖ କରି କ'ଣ କାମ କରୁଛି ଆଉ କ'ଣ କାମ କରୁ ନାହିଁ ଜାଣନ୍ତୁ । ଏହି ଜ୍ଞାନକୁ ଅନ୍ୟମାନଙ୍କୁ ଜଣାନ୍ତୁ ।



**ପଦକ୍ଷେପ ପାଇଁ!**

**ଆପଣଙ୍କ ଅଞ୍ଚଳର ଅନ୍ୟ ଚାଷୀମାନଙ୍କ ସହ ଏକାଠି ହୁଅନ୍ତୁ ।**

**ପ୍ରତ୍ୟେକ ସପ୍ତାହରେ ଏକାଠି ବସନ୍ତୁ ।**

**ଆପଣଙ୍କ ଜମିକୁ ଲକ୍ଷ୍ୟ କରନ୍ତୁ ।**

**କ'ଣ କାମ କରୁଛି, କ'ଣ କାମ କରୁନି ଅନ୍ୟମାନଙ୍କୁ ଜଣାନ୍ତୁ ।**

**ସାହାଯ୍ୟ ଦରକାର ହେଲେ ବିକଳ୍ପ କୃଷିରେ ସଂପୃକ୍ତ ଥିବା ସଂପ୍ରସାରଣ ଅଧିକାରୀ ବା ବେସରକାରୀ ଅନୁଷ୍ଠାନ ସହ ଯୋଗାଯୋଗ କରନ୍ତୁ ।**

**ବଦଳାଇବା ସହଜ ନୁହେଁ**

ଜୈବିକ କୃଷିକୁ ବଦଳି ଆସିବା ସହଜ ନୁହେଁ । ଅନେକଗୁଡ଼ିଏ କାରଣରୁ ଚାଷୀ ଏହି ବଦଳ କରିପାରନ୍ତି ନାହିଁ । ସେଥି ମଧ୍ୟରୁ କେତୋଟି କାରଣ ହେଲା:

- ଚାଷୀଠାରୁ ଫସଲ କିଣୁଥିବା ବ୍ୟକ୍ତି ବା କମ୍ପାନୀ ଏକ ନିର୍ଦ୍ଦିଷ୍ଟ ବାଟରେ ଅମଳ ହୋଇଥିବା ଫସଲ ଦରକାର କରନ୍ତି ।
- ଚାଷୀ ଋଣ କରିଥାଇପାରେ ଏବଂ ରାସାୟନିକ ସାର ଓ କୀଟନାଶକ ବ୍ୟବହାର କରି ଅଧିକ ଅମଳ ପାଇବା କଥା ସୁନିଶ୍ଚିତ କରିବାକୁ ଚାହେଁ । ଋଣର କିଛି ଅଂଶ କୀଟନାଶକ ବା ରାସାୟନିକ ସାର ଭାବରେ ମିଳିଥାଇପାରେ ।
- ଅନେକଗୁଡ଼ିଏ ଫସଲ ବୀମା ଯୋଜନାରେ ଚାଷୀ କୀଟନାଶକ ବ୍ୟବହାର ନକଲେ ବୀମାଭୁକ୍ତ ହୋଇପାରେ ନାହିଁ ।
- ଆଧୁନିକ କୃଷିରୁ ନିରନ୍ତର କୃଷିକୁ ବଦଳାଇବା ବେଳେ ପ୍ରଥମ କିଛି ବର୍ଷ ଧରି ମାଟି ତା'ର ପ୍ରାକୃତିକ ସନ୍ତୁଳନ ଓ ସୁସ୍ଥତା ଫେରିପାଇବା ଯାଏଁ କମ ଅମଳ ହୋଇଥାଏ ।
- ବଜାରରେ ବିକ୍ରି ହେଉଥିବା ବିହନ ସାଧାରଣତଃ ଅଧିକ ରାସାୟନିକ ସାର ଓ କୀଟନାଶକ ବ୍ୟବହାର ଉପରେ ନିର୍ଭରଶୀଳ ।
- ଜଣେ ଚାଷୀ ତା'ର ଫସଲର କିଛି ନିର୍ଦ୍ଦିଷ୍ଟ ପରିମାଣ ଅମଳ କଲେ ହିଁ ତାହା ବିକ୍ରି କରିବା ସମ୍ଭବ ହେବ ।
- ସରକାର ରପ୍ତାନୀ ପାଇଁ ଅର୍ଥକାରୀ ଫସଲକୁ ପ୍ରୋତ୍ସାହନ ଯୋଗାଉଛନ୍ତି ।
- ସରକାର ସାଧାରଣତଃ କେତୋଟି ନିର୍ଦ୍ଦିଷ୍ଟ ଫସଲକୁ ସହାୟତା ଯୋଗାଉଛନ୍ତି ।
- ପାଖ କ୍ଷେତର ଚାଷୀ କୀଟନାଶକ ବ୍ୟବହାର କଲେ ତା'ର କୁପ୍ରଭାବ କୀଟନାଶକ ବ୍ୟବହାର କରୁ ନଥିବା ଚାଷ ଜମି ଉପରେ ପଡ଼ିଥାଏ ।

**ବଡ଼ ବ୍ୟବସାୟ ବିହନ ନିୟନ୍ତ୍ରଣ କରେ**

ଶିଳ୍ପାୟିତ ଦେଶଗୁଡ଼ିକରେ ପ୍ରାୟ ସବୁ ଖାଦ୍ୟ ଯୋଗାଉଥିବା ଉଦ୍ଭିଦର ଜନ୍ମସ୍ଥାନ ରହିଛି ବିକାଶଶୀଳ ଦେଶମାନଙ୍କରେ । ଦଶ ହଜାର ବର୍ଷରୁ ଅଧିକ ସମୟ ଚାଷୀ ଓ ପ୍ରକୃତି ଦ୍ୱାରା ଚୟନ ଓ ବିକାଶ ଫଳରେ ତୃତୀୟ ବିଶ୍ୱ ପୃଥିବୀର ଜିନୀୟ ବିବିଧତାର ଗନ୍ତାଘର ହୋଇପାରିଛି ।

କିନ୍ତୁ ସବୁଜ ବିପ୍ଳବ ସହ ତୃତୀୟ ବିଶ୍ୱର ଅଧିକାଂଶ ଖାଦ୍ୟ ଫସଲର ଜିନୀୟ ବିବିଧତା ସଂପୂର୍ଣ୍ଣ ଭାବରେ ଲୋପ ପାଇବାକୁ ବସିଲାଣି । ଏହା ସହିତ ଯୁକ୍ତରାଷ୍ଟ୍ର ଆମେରିକା ଏବଂ ଅନ୍ୟ ଦେଶମାନେ ସବୁଜ ବିପ୍ଳବରେ ବିକଶିତ ହୋଇଥିବା ନୂଆ ବିହନ ଉପରେ ପେଟେଣ୍ଟ ଆଇନ ଲାଗୁ କରିବାରେ ଲାଗିଲେ । କମ୍ପାନୀମାନେ ଏହି ପେଟେଣ୍ଟ ଆଇନ ବଳରେ ବିହନ ଉପରେ ମାଲିକାନା ଜାହିର କଲେ ଏବଂ ବିହନର ବ୍ୟବହାର ଉପରେ ନିୟନ୍ତ୍ରଣ ରଖିଲେ ।

ପୃଥିବୀର କେତୋଟି ବଡ଼ ବିହନ କମ୍ପାନୀ ହେଉଛି ଡୁପଣ୍ଟ, ମନ୍‌ସାଣ୍ଟୋ ଓ ସିନ୍‌ଜେଣ୍ଟା । ବିହନ ବଜାରର ଅଧିକାଂଶ ଭାଗକୁ ପ୍ରାୟ ୨୦ଟି କମ୍ପାନୀ ନିଜ ନିୟନ୍ତ୍ରଣରେ ରଖିଛନ୍ତି । ବଜାର ଦର ଖସିଲା ବେଳକୁ ବିହନ ଦର ବଢୁଛି । ବାସ୍ତବରେ ପ୍ରତ୍ୟେକ ମୁଖ୍ୟ ଖାଦ୍ୟ ଫସଲର ଅଧିକାର ଏବେ ଉତ୍ତର ଗୋଲାର୍ଦ୍ଧର ଦେଶମାନଙ୍କ ହାତରେ ରହିଲାଣି ।

---

**ପଦକ୍ଷେପ ପାଇଁ!**



ଆପଣଙ୍କୁ କିଣିବାକୁ ପଡ଼ୁଥିବା ସବୁ କମ୍ପାନୀର ବିହନ ବିଷୟରେ ଗବେଷଣା କରନ୍ତୁ ।

କିଏ ଏହି ବିହନଗୁଡ଼ିକର ଅଧିକାର ରଖିଛି ଏବଂ ଲାଭ କରୁଛି ?

ଖାଦ୍ୟ ସୁରକ୍ଷା ଉପରେ ଏହି ନୂଆ ବିହନଗୁଡ଼ିକର ପ୍ରଭାବ କ'ଣ ବୋଲି ଆପଣ ମନେ କରୁଛନ୍ତି ?

ସ୍ଥାନୀୟ ପରିସ୍ଥିତିକୁ ଖାପ ଖୁଆଉଥିବା ବିହନ ଚାଷୀ କିପରି ପାଇବେ ?

ଏହା ଚାଷୀର ସ୍ୱାଧୀନତାକୁ କିପରି ପ୍ରଭାବିତ କରିବ ?

---

**ଆଜିକାର ବିହନ କେବଳ ଗୋଟିଏ ପିଢ଼ି ପାଇଁ ବଢ଼ିପାରେ**

ପ୍ରାୟ ସବୁ ବଡ଼ ବିହନ କମ୍ପାନୀ ବଡ଼ ରାସାୟନିକ ଉତ୍ପାଦକ ମଧ୍ୟ ଅଟନ୍ତି । ତେଣୁ ସେମାନେ ନିଜର ଲାଭ ପାଇଁ ବିକାଶ କରୁଥିବା ନୂଆ ବିହନଗୁଡ଼ିକ ବହୁମାତ୍ରାରେ ବିଷାକ୍ତ ରାସାୟନିକ ଉପରେ ନିର୍ଭରଶୀଳ । ଆମେ ଦେଖିବାରେ ଏହି ପଦ୍ଧତିର ଚାଷ ମୂଳତଃ କ୍ଷୁଦ୍ର ଚାଷୀ ଓ ନିରନ୍ତର କୃଷିର ବିପକ୍ଷରେ ହିଁ ଯାଏ ।

ବିଭିନ୍ନ କମ୍ପାନୀ ବିକଶିତ କରିଥିବା ବିହନଗୁଡ଼ିକ କେବଳ ଗୋଟିଏ ପିଢ଼ି ହିଁ ବଢ଼ିଥାଏ । ଚାଷୀ ତା'ର ଫସଲରୁ ମଞ୍ଜି ସଂଗ୍ରହ କରି ପରବର୍ଷକୁ ଲଗାଇଲେ ଏହା ଆଉ ଗଜା ହୁଏ ନାହିଁ । ଏ ପ୍ରକାର ବିହନ ବିକାଶ କରିବା ପଛରେ କମ୍ପାନୀର ଉଦ୍ଦେଶ୍ୟ ହେଉଛି ଚାଷୀ ଯେପରି ପ୍ରତିବର୍ଷ ନୂଆ ବିହନ କିଣିବ ।

ବଡ଼ ବଡ଼ କମ୍ପାନୀ ଖାଦ୍ୟ ଓ କୃଷି ବଜାରକୁ ଅଧିକରୁ ଅଧିକ ନିୟନ୍ତ୍ରଣ କରି ଚାଲିଛନ୍ତି । ତେଣୁ ଅଳ୍ପ କେତେ ଚାଷୀ ଅଧିକ ପାରିବେଶିକ ଓ ଉପକାରୀ ପ୍ରାକୃତିକ କୃଷିକୁ ଆଦରି ନେବା କଷ୍ଟକର ହୋଇ ପଡ଼ୁଛି ।

ଅଣ-ରାସାୟନିକ କୃଷି ବ୍ୟବସ୍ଥା ପରି ବିକଳ୍ପ ବିନା କ୍ଷୁଦ୍ରଚାଷୀ ଏବଂ ଦକ୍ଷିଣ ଗୋଲାର୍ଦ୍ଧର ଦେଶଗୁଡ଼ିକ ବଡ଼ ବଡ଼ କମ୍ପାନୀଙ୍କ ପାଖରେ ପ୍ରାୟ ପଣବନ୍ଦୀ ହୋଇ ରହୁଛନ୍ତି ।





**ନିରନ୍ତର କୃଷି ହେଉଛି ଏକ ସାମାଜିକ ଦାୟିତ୍ୱ**

ନିରନ୍ତର କୃଷିରେ ବହୁତଗୁଡ଼ିଏ ଲାଭ ରହିଛି । ଯଥା:

- ସ୍ୱାସ୍ଥ୍ୟପ୍ରଦ ଖାଦ୍ୟ ଅମଳ ।
- ଭବିଷ୍ୟତ ପିଢ଼ି ପାଇଁ ଏକ ସୁସ୍ଥ ପରିବେଶ ।
- ଗୋଷ୍ଠୀ ଭିତରେ କୀଟନାଶକର ବିଷାକ୍ତ ପ୍ରଭାବର ପରିସମାପ୍ତି ।
- ସୁରକ୍ଷିତ ଖାଦ୍ୟ ଯୋଗାଣ ।
- ବଜାର ଦର ଉପରେ ନିଜର ନିୟନ୍ତ୍ରଣ ।
- ବାହାରୁ ଧାର ଆଣିବାର ବିପଦ କମିବ ।
- କ୍ଷୁଦ୍ରଚାଷୀ ଏସିଆ/ପ୍ରଶାନ୍ତ ମହାସାଗରୀୟ ଗ୍ରାମ୍ୟ ସଂସ୍କୃତିର ଅବିଚ୍ଛିନ୍ନ ଅଂଶ ହୋଇ ବଞ୍ଚି ରହିପାରିବ ।

ଧନୀଦେଶର ଚାଷୀମାନେ ଯଥେଷ୍ଟ ସରକାରୀ ସାହାଯ୍ୟ ପାଆନ୍ତି ଏବଂ ପରିବେଶ ବା ଗୋଷ୍ଠୀର ଅସୁବିଧା ପ୍ରତି ସେମାନେ ଖାତିର କରନ୍ତି ନାହିଁ । ଧନୀ ଦେଶର ବଡ଼ଚାଷୀମାନେ ବିଶାଳ କ୍ଷେତରେ ଏବଂ ଯାନ୍ତ୍ରିକ କୌଶଳରେ ଚାଷ କରନ୍ତି । ଏହିସବୁ କାରଣରୁ ସ୍ଥାନୀୟ ଛୋଟଚାଷୀ ତାଙ୍କ ସହ ପ୍ରତିଯୋଗିତା କରିବା କଷ୍ଟକର ।

**ଚାଷ ଜମିରୁ ଭାତଥାଳି - ଏକ ଭାଗିଦାରୀ**

ନିରନ୍ତର ଧାରାରେ ଫସଲ କରୁଥିବା ଚାଷୀମାନେ ପରିବେଶକୁ ନଷ୍ଟ କରୁଥିବା ଚାଷୀଙ୍କ ସହ ପ୍ରତିଯୋଗିତା କରିବାକୁ ବାଧ୍ୟ ହେଉଛନ୍ତି । ବର୍ତ୍ତମାନର ଅବସ୍ଥାକୁ କେହି ଏକା ଏକା ବଦଳାଇ ପାରିବ ନାହିଁ । ସ୍ୱାସ୍ଥ୍ୟକର ଖାଦ୍ୟ ଓ ସୁରକ୍ଷିତ ପରିବେଶ ଚାହୁଁଥିବା ସବୁ ଲୋକଙ୍କୁ ଏକାଠି କାମ କରିବାକୁ ପଡ଼ିବ ।

ଅର୍ଥାତ ଚାଷୀ ଓ ଖାଉଟି ଏକାଠି କାମ କଲେ ହିଁ ଏହି ବିନାଶକାରୀ ଚକ୍ରକୁ ଭଙ୍ଗାଯାଇ ପାରିବ ।

ପୃଥିବୀ ସାରା ଅନେକ ଗୋଷ୍ଠୀରେ ଚାଷୀ ଓ ଖାଉଟି ଏକାଠି ହେଲେଣି, ଏହାକୁ ଗୋଷ୍ଠୀ ସମର୍ଥିତ କୃଷି ଉଦ୍ୟମ ବା ସିଏସ୍ଏ କୁହାଯାଉଛି ।

ଏହି ଗୋଷ୍ଠୀ ସମର୍ଥିତ କୃଷି ଉଦ୍ୟମରେ ଖାଉଟି ଓ ଚାଷୀ ଏକାଠି ବସନ୍ତି ଓ କେଉଁ ଫସଲ ବା ପରିବା ଲଗାହେବ ଏବଂ କିପରି ଚାଷୀ ଅଧିକା ଲାଭ ପାଇବ ତା'ର ଯୋଜନା କରନ୍ତି । ଏହି ବାଟରେ ଖାଉଟି ସ୍ୱାସ୍ଥ୍ୟପ୍ରଦ ଖାଦ୍ୟ ସୁଲଭ ମୂଲ୍ୟରେ ପାଇପାରେ ଏବଂ ଚାଷୀ ଉଚିତ୍ ମୂଲ୍ୟ ପାଇପାରେ ।

---

**ପଦକ୍ଷେପ ପାଇଁ!**



**ଆପଣଙ୍କ ଫସଲକୁ ବିକ୍ରି କରି ଭଲ ଲାଭ ପାଇବା ପାଇଁ ବିକଳ୍ପ ବାଟ କ'ଣ ଅଛି ?**

**ଗୋଷ୍ଠୀ ସମର୍ଥିତ କୃଷି ପରି ଖାଉଟି ଦଳ ସହ କାମ କରି ବିକ୍ରି କରିବାର ଯୋଜନା କରନ୍ତୁ ।**

---

# ପରିଶିଷ୍ଟ ୧

## ଆର୍ଦ୍ର ଗ୍ରୀଷ୍ମ ମଣ୍ଡଳୀୟ ଅଞ୍ଚଳର କ୍ଷୁଦ୍ରଚାଷୀଙ୍କ ପାଇଁ ନିରନ୍ତର କୃଷି ବ୍ୟବସ୍ଥାର ଗୁଣଧର୍ମ

ଜୁଲିଆନ୍ ଗନ୍‌ସାଲ୍‌ଭେସ୍, ପିଏଚ୍.ଡି.
ଆନ୍ତର୍ଜାତୀୟ ଗ୍ରାମ୍ୟ ପୁନର୍ଗଠନ ପ୍ରତିଷ୍ଠାନ
ସିଲାଙ୍ଗ, କାଭିଟେ, ଫିଲିପାଇନ୍‌ସ ।

୧. କ୍ଷେତର ବାହ୍ୟ ସମ୍ପଦ ଅପେକ୍ଷା ଆଭ୍ୟନ୍ତରୀଣ ସମ୍ପଦ ଉପରେ ବେଶୀ ନିର୍ଭର କରେ (ରୋଡେଲ ୧୯୮୩) । ଯଥା, ବର୍ଷାଜଳ, ବାୟୁମଣ୍ଡଳୀୟ ଯବକ୍ଷାରଜାନ, ଜୀବଖତ, ଘରେଇ ଶ୍ରମିକ ।

୨. କ୍ଷେତରେ ଚାଷ ଓ ଅନ୍ୟ କାମର ବିବିଧତା ରହିବା ଦରକାର । (ଚାଷ ଭଳି କେବଳ ଗୋଟିଏ କାମ ନୁହେଁ ।)

୩. କମ୍ପୋଷ୍ଟ କରିବା, ଗୋଖାଦ୍ୟ ଭାବରେ ବ୍ୟବହାର କରିବା, ହଳ କରି ମାଟିରେ ମିଶାଇବା ଆଦି ବାଟରେ ନଡ଼ା, ମୂଳୀ ଆଦି ଉଦ୍ଭିଦଜ ଅଳିଆର ପୁନଃଚକ୍ରଣ କରିବା ।

୪. ସାର ଓ କୀଟନାଶକ ପରି ରାସାୟନିକ ନିବେଶକୁ କମାଇବା । (ଏହି କମିବା ଧୀରେ ଧୀରେ କରିବା ଉଚିତ, ଏକା ଥରକେ ବେଶୀ ନୁହେଁ ।) ଆର୍ଦ୍ର ଗ୍ରୀଷ୍ମ ମଣ୍ଡଳୀୟ ଅଞ୍ଚଳରେ ଅତ୍ୟଧିକ ବୃଷ୍ଟିପାତ (ଅଧିକ ନିଷ୍କାଳନ) ଏବଂ ଅଧିକ ଆର୍ଦ୍ରତା (ଅଧିକ ରୋଗ) ଯୋଗୁଁ ପୂରା ଜମିରୁ ରାସାୟନିକ କାଢ଼ିଦେବା ସମ୍ଭବ ହୋଇନପାରେ ।

୫. ବାୟୁ ମଣ୍ଡଳୀୟ ଯବକ୍ଷାରଜାନ (ବାୟୁର ପ୍ରାୟ ୭୮ ଭାଗ ହେଉଛି ଯବକ୍ଷାରଜାନ)କୁ ଧରିବା ପାଇଁ ବାର୍ଷିକ ଫସଲ ଚକ୍ରରେ ଶିମ୍ବିଜାତୀୟ ଫସଲ କରିବା ଦରକାର । ଯଥା, ଧାନ ବା ମକା ପରେ ପର୍ଯ୍ୟାୟ କ୍ରମେ ମୁଗ ବା ଝୁଡ଼ଙ୍ଗ ଲଗାଇବା ଉଚିତ ।

୬. ଯେଉଁଠି ସମ୍ଭବ (ଯଥା, ଉଚ୍ଚ ଜମି, ବର୍ଷା ପ୍ରଧାନ ଫସଲ ଜମି) ସେଠାରେ ଶସ୍ୟ-ଶିମ୍ବି ଯୋଡ଼ି ଆଧାରିତ ଅନ୍ତର୍ବର୍ତ୍ତୀ ଫସଲକୁ ପ୍ରୋତ୍ସାହିତ କରିବା ଦରକାର (ଯଥା, ମକା ଓ ବିନ୍‌କୁ ଏକାଠି ଚାଷ କରିବା ।)

୭. ଖାଲୁଆ ଧାନ ଜମିରେ ଜୈବସାର ଯଥା, ଆଜୋଲା ବା ଆଜୋସ୍ପିରିଲା ବା ନୀଳହରିତ ଶୈବାଳ ବ୍ୟବହାର କରିବା ଉଚିତ । ଏହା ଫଳରେ ୩୦-୫୦ ଭାଗ ରାସାୟନିକ ଯବକ୍ଷାରଜାନର ଉପଯୋଗ କମିପାରିବ ।

୮. ଜମିରେ ପଡ଼ୁଥିବା ବର୍ଷାପାଣିକୁ ସମୋଚ୍ଚ ନାଳ (ଢାଲୁ ଜମିରେ) ମାଧ୍ୟମରେ ସଂଗ୍ରହ କରେ ଏବଂ ମାଟିର ଜୈବିକ ଉପାଦାନ ବଢ଼ାଇ ଭେଦୁଥିବା ପାଣିର ପରିମାଣ ଅଧିକ କରେ । ଜମିରେ ଅଧିକ ଗଛ ଥିଲେ (ନଂ-୧୪ ଦେଖନ୍ତୁ) ମାଟି ଉପରେ ପଡ଼ୁଥିବା ବର୍ଷାପାଣି ଗଭୀର ଭେଦିବାରେ ସହାୟକ ହୁଏ । ମାଟିରେ ଫସଲର ଅବଶେଷ ବା ଛାଦି (ମଲ୍‌ଚ) ଥିଲେ ତାହା ପାଣି ବହିଯିବାକୁ ଏବଂ ବର୍ଷା ପରର ବାଷ୍ପୀଭବନକୁ କମାଇଦିଏ । କ୍ଷେତରେ ଛୋଟ ପୋଖରୀ ଖୋଳି ବହିଯାଉଥିବା ପାଣିକୁ ସେଥିରେ ରଖିହେବ ।

୯. ଛୋଟ କ୍ଷେତରେ (ଏକ ହେକ୍ଟର ବା କମ୍) ପ୍ରାଣୀ (ପୋଢ଼ ବା ଗୋରୁ) ସାହାଯ୍ୟରେ ହଳ କରାହୁଏ । ଏହି ପ୍ରାଣୀଗୁଡ଼ିକ ଫାର୍ମର ଉପଜାତ ପଦାର୍ଥ (ଯଥା, ନଡ଼ା, କଟା ପତ୍ର ଆଦି)କୁ ଖାଇକରି ବଞ୍ଚିପାରନ୍ତି ।

୧୦. ସଂକର ଫସଲ ବଦଳରେ ମୁକ୍ତ ପରାଗ ସଙ୍ଗମିତ ଅଧିକ ଅମଳକ୍ଷମ କିସମର ଫସଲ ପସନ୍ଦ କରାଯାଏ । ଏହି ଫସଲର ବିହନକୁ ଚାଷୀ ଅନେକ ପିଢ଼ି ଧରି ରଖିପାରିବେ ।

୧୧. ପାରମ୍ପରିକ କିସମର ପରିବାଗୁଡ଼ିକୁ ଘର ପଛପଟେ ପରିବାରର ଛୋଟ ବଗିଚାରେ (ଜୈବ-ସଘନ ବଗିଚା) ଲଗାଇ ହେବ । ଏହି ବାଟରେ ତାହା ଭବିଷ୍ୟତ ପିଢ଼ି ପାଇଁ ସଂରକ୍ଷିତ ରହିପାରିବ ।

୧୨. ଫସଲର (କ୍ଷେତ ବା ବଗିଚା ସ୍ତରରେ) ଜିନୀୟ ବିବିଧତାକୁ ପ୍ରୋତ୍ସାହିତ କରାଯାଏ । ଗୋଟିଏ କିସମ ଚାଷ କରିବା ଅପେକ୍ଷା ଦୁଇ ବା ଅଧିକ କିସମ ଚାଷ କଲେ ଫସଲ ବିଫଳ ହେବାର ସମ୍ଭାବନା କମିଯାଏ ।

୧୩. ବାର୍ଷିକ ଫସଲ ପାଇଁ ଜାଗା କମାଇ ବହୁବାର୍ଷିକ ଫସଲ (ଯଥା, କଫି, ଫଳଗଛ, ସ୍ଥାନୀୟ ଓ ଆନ୍ତର୍ଜାତୀୟ ଚାହିଦା ଥିବା ଅନ୍ୟ ଫସଲ) ପାଇଁ ଅଧିକ ଜାଗା ଉପଯୋଗ କରେ । ତାହେଲେ ବାର୍ଷିକ ଫସଲ ପାଇଁ ବ୍ୟବହାର ହେଉଥିବା ଅଞ୍ଚଳରେ ସଘନ ଚାଷ ହୋଇପାରିବ । ଲମ୍ବା ସମୟ ଧରି ଦେଖିଲେ ବହୁବାର୍ଷିକ ଫସଲ ରୋଜଗାର ଦୃଷ୍ଟିରୁ ଅଧିକ ନିର୍ଭରଯୋଗ୍ୟ । ମରୁଡ଼ି ଓ ରୋଗ ପ୍ରତି ତାହା କମ୍ ସଂବେଦନଶୀଳ ହୁଏ ଏବଂ ସାମଗ୍ରିକ ଭାବରେ କମ୍ ପରିଶ୍ରମ ଦରକାର କରେ । ଏକା ପ୍ରକାରର ବହୁତ ଗଛ ଲଗାଇବା ଅପେକ୍ଷା ବିଭିନ୍ନ ଜାତିର ଗଛ ମିଶାଇ ଲଗାଇବା ଭଲ । ମିଶାମିଶି ଜାତିର ଗଛ (ଅଲଗା ଅଲଗା ଉଚ୍ଚତାର) ଲଗାଇଲେ ସେସବୁର ଉପର ପତ୍ର ବିଭିନ୍ନ ଉଚ୍ଚତାରେ ରହି ଅଧିକ ସୂର୍ଯ୍ୟକିରଣର ଉପଯୋଗ କରି ପାରିବେ ।

୧୪. ପରିବାରର ଜାଳେଣି ଆବଶ୍ୟକତା (ଘରେଇ ରୋଷେଇ, ଗରମ କରିବା ବା ଖାଦ୍ୟ ସଂରକ୍ଷଣ/ଶୁଖାଇବା) କ୍ଷେତରେ ଲାଗିଥିବା ବହୁମୁଖୀ (ଜାଳେଣି, ଗୋଖାଦ୍ୟ, ସବୁଜ ଖତ) ଗଛଗୁଡ଼ିକ ଭରଣା କରିବେ । ଏହି ଗଛଗୁଡ଼ିକ ତଳେ ଦିଆହୋଇଥିବା ଏକ ବା ଅଧିକ ବାଟରେ ବଢ଼ାଯାଇପାରିବ । ଯଥା, କ୍ଷେତ ଚାରିକଡ଼ରେ ପବନ ରୋକିବା ପାଇଁ, ସଘନ କାଠ ପାଇଁ, ଶତକଡ଼ା ୬୦ ଭାଗରୁ ଅଧିକ ଢାଲୁଥିବା ଜମିରେ ବା ବୀଥୀ ଚାଷ ପାଇଁ (ମକା ବା ଉଚ୍ଚଜମିରେ ଧାନ ପରି ବାର୍ଷିକ ଚାଷ ଜମିରେ ପ୍ରତି ଚାରି ମିଟର ବ୍ୟବଧାନରେ ଧାଡ଼ି ଧାଡ଼ି ଗଛ ଲଗାଯାଇପାରିବ ।)

୧୫. ଜମିର ଢାଲୁ ବା ଉଚ୍ଚ ଅଂଶରେ ଯବକ୍ଷାରଜାନ ବିବନ୍ଧନ କରୁଥିବା ଓ ଶୀଘ୍ର ବଢୁଥିବା ଗଛ ଲଗାଯାଇ ପାରିବ । ଏହା ଘର ତିଆରି ଓ ଜାଳେଣି ପାଇଁ କାଠ ଯୋଗାଇ କିଛି ରୋଜଗାର କରାଇ ପାରିବ । ସଘନ କାଠ ଗଛ ଲଗାଇଲେ ତୃତୀୟ ବର୍ଷ ପରଠୁ କିଛି ଅତିରିକ୍ତ ରୋଜଗାର ଯୋଗାଇବ ।

୧୬. ବଜାରମୁଖୀ ପରିବା ବଗିଚାକୁ ବର୍ଷସାରା ଦେଖାଶୁଣା କରିବାକୁ ପଡ଼ିବ । ଏପ୍ରକାର ବଗିଚା ପ୍ରତି ସପ୍ତାହରେ କିଛି ଅର୍ଥ ଦୈନିକ ଆବଶ୍ୟକତା ପୂରଣ ପାଇଁ ଯୋଗାଇ ଥାଏ । ଏହି ପ୍ରକାରର ସଘନ ଚାଷ ବଗିଚାର ଆକାର ୧୦୦ରୁ ୫୦୦ ବର୍ଗ ମିଟର ଭିତରେ ରହିଲେ ତାହା ନିୟମିତ ରୋଜଗାର ସୁନିଶ୍ଚିତ କରିବ । ଯଦି ବଜାର ଚାହିଦା ଭଲ ଥାଏ ଏବଂ କୌଣସି ପରିବା ତା'ର ମୁଖ୍ୟ ଋତୁ ବାହାରେ ଚାଷ ହୋଇପାରିବ, ତେବେ ପ୍ରାୟ ୫ ଗୁଣ ଅଧିକ ଆୟ ମିଳିପାରିବ ।

୧୭. ବିବିଧ ଫସଲ ଥିବା କ୍ଷେତରୁ ଏକ ସମୟରେ ଏକା ପ୍ରକାରର ଉତ୍ପାଦ ବହୁତ ପରିମାଣରେ ନ ବାହାରି ବହୁ ପ୍ରକାରର ଉତ୍ପାଦ ମିଳିଥାଏ । ଏହା ଫଳରେ ଏହା ସ୍ଥାନୀୟ ଭାବରେ ବିକ୍ରି ହୋଇଯାଏ । ତେଣୁ ପରିବହନ ଖର୍ଚ୍ଚ କମିବା ସହ କମ୍ ବା ବିନା ମଧ୍ୟସ୍ଥିରେ ବିକ୍ରି ହୁଏ । ତେଣୁ ଚାଷୀର ଲାଭ ଅଧିକ ହୁଏ ।

୧୮. ଫାର୍ମର ଉତ୍ପାଦକୁ ଯଥାସମ୍ଭବ ପ୍ରକ୍ରିୟାକୃତ କରି ତାକୁ ବିକ୍ରି କରେ । (ଯଥା, ଚିନାବାଦାମରୁ ତେଲ ବା ଲହୁଣୀ ବାହାର କରିବା, କାସାଭାରୁ ଚୁନା ବା ଚିପ୍ସ କରିବା, କ୍ଷୀରରୁ ଘର ତିଆରି ଛେନା କରିବା, ନଡ଼ିଆରୁ ତେଲ ବା ମିଠାଇ କରିବା) ।

୧୯. ଦ୍ୱିତୀୟ ଫସଲ ସମୟରେ ଯଥାସମ୍ଭବ କମ୍ କର୍ଷଣ କରି ମାଟିର ଆର୍ଦ୍ରତା ସଞ୍ଚିତ କରେ । ପୂର୍ବ ଚାଷର ଅବଶେଷ ବା ମୂଳୀ ଥିବା ଅବସ୍ଥାରେ ହଳ ନକରି ଶିମ୍ବି ଜାତୀୟ ଫସଲକୁ ସିଧାସଳଖ ବୁଣି ଦେଲେ ଏହା ହୋଇପାରିବ ।

୨୦. କ୍ଷେତରେ ମାଛ ଚାଷ କରାଯାଏ । କମ୍ ପାଣିରେ ଓ ଡ୍ରମ୍ ବା କଂକ୍ରିଟ କୁଣ୍ଡରେ ମଡ଼ଫିସ୍ ଓ କୋଚିଆ ଜାତିର ମାଛ ରଖାଯାଇପାରେ । ଅଧିକ ପାଣି ସୁବିଧା ଥିବା ଜାଗାରେ ୫୦ ବର୍ଗ ମିଟର ଆକାରର ପୋଖରୀ ମାଛଚାଷ ପାଇଁ ଉପଯୁକ୍ତ ହେବ । ଖାଲୁଆ ଧାନ କିଆରିରେ ଖାଲ କରି ଧାନ-ମାଛ ଚାଷ ବ୍ୟବସ୍ଥା କରାଯାଇ ପାରିବ । ଖାଇଗୁଡ଼ିକ ଅବଶ୍ୟ ଶୁଖିଲା ଋତୁରେ ମାଛଙ୍କୁ ଆଶ୍ରୟ ଯୋଗାଏ । ଏହି ବ୍ୟବସ୍ଥାରେ ରୋହି ଜାତୀୟ ମାଛ ଓ ତିଲାପିଆ ବଢ଼ିପାରନ୍ତି ।

୨୧. ଆଂଶିକ ବା ପୂର୍ଣ୍ଣ ଭାବରେ କୀଟ ନିୟନ୍ତ୍ରଣ ତଳ ଉପାୟରେ କରାଯାଏ -

କ. ମାଟିକୁ ସୁସ୍ଥ ରଖି, ଖ. ବିବିଧ ଫସଲ ଚାଷ କରି,

ଗ. କୀଟଖାଦକଙ୍କ ରକ୍ଷଣାବେକ୍ଷଣ, ଘ. ପ୍ରତିରୋଧକ୍ଷମ କିସମର ଚାଷ,

ଙ. ଫସଲ ଉପରୁ ଚାପ କମାଇବା । ତଥାପି ଯଦି କୀଟ ସମସ୍ୟା ରହେ, ତେବେ ନିୟମିତ ସିଞ୍ଚନ ଅପେକ୍ଷା ଆବଶ୍ୟକ ଅନୁସାରେ ସିଞ୍ଚନ କରାଯାଏ ।

୨୨. ଚାଷୀର ପରିବାରରୁ ହିଁ ଅଧିକାଂଶ ଶ୍ରମ ମିଳିଥାଏ । ବିବିଧତା ଥିବା କ୍ଷେତରେ ଶ୍ରମର ଆବଶ୍ୟକତା ସବୁବେଳେ ପ୍ରାୟ ସମାନ ରହିଥାଏ । କିନ୍ତୁ ଏକ ପ୍ରକାରର ଫସଲ ହେଉଥିବା କ୍ଷେତରେ ଶ୍ରମର ଆବଶ୍ୟକତା ଚାଷ ଅନୁସାରେ କମ୍ ବେଶୀ ହୋଇଥାଏ । ମଜୁରିଆ ଶ୍ରମିକ ଆସୁଥିଲେ ତାହା ଜମିହୀନ ବା ବେରୋଜଗାରୀଙ୍କୁ କାମ ଯୋଗାଉଛି ବୋଲି କହିବାକୁ ହେବ । ତେବେ ସବୁଠୁ ବଡ଼ କଥା ହେଉଛି ଯେ ଶ୍ରମିକ ନିଯୁକ୍ତି ଯେପରି ଆର୍ଥିକ ଦୃଷ୍ଟିରୁ ଯୁକ୍ତିଯୁକ୍ତ ହୁଏ ।

୨୩. କ୍ଷେତରେ ପଶୁସମ୍ପଦ ସମନ୍ୱିତ ଭାବରେ ରହିଥିଲେ ଭଲ, ବିଶେଷ କରି ଯଦି ତାହା ଫସଲ ଅବଶେଷର ପୁନଃଚକ୍ରଣରେ ସାହାଯ୍ୟ କରୁଛି । କିମ୍ବା ତାହା ଯଦି ମାଛ ଚାଷ ବା ଶସ୍ୟ ଫସଲ ସହ ସମନ୍ୱିତ ଭାବରେ କାମ କରିପାରୁଛି (ଯଥା, ୨୦୦ କୁକୁଡ଼ାଙ୍କ ଖତ ୧ ହେକ୍ଟର ଜମିରେ ଧାନ ଚାଷ ପାଇଁ ଯଥେଷ୍ଟ ହୋଇଥାଏ) । ବ୍ୟବସାୟିକ ଭିତ୍ତିରେ କରାଯାଉଥିବା ପଶୁପାଳନ କ୍ଷେତରୁ ବାହାରୁ ଥିବା ସାଧନ (ଆଡୋଲା, ଗୋଖାଦ୍ୟ ଫସଲ, ଗେଣ୍ଡା, କୁଣ୍ଡା, କଦଳୀ ଗଣ୍ଠି ଇତ୍ୟାଦି) ଉପରେ ବେଶୀ ଓ ବାହାରୁ ଆସୁଥିବା ସାଧନ ଉପରେ କମ୍ ନିର୍ଭର କରିବା ଜରୁରୀ ।

**ଯୋଗାଯୋଗ ଠିକଣା:**

**ଲିଭିଙ୍ଗ ଫାର୍ମସ୍**
ପ୍ଲଟ୍ ନଂ. ୧୧୮୧/୨୧୪୬, ରତ୍ନାକରବାଗ-୨,
ଟଙ୍କପାଣି ରୋଡ,
ଭୁବନେଶ୍ୱର - ୭୫୧ ୦୧୮

**ଋଷିକୁଲ୍ୟା ରୟତ ମହାସଭା**
ଛତ୍ରପୁର,
ଗଞ୍ଜାମ

**ସମ୍ଭବ**
ରୋହିବାଙ୍କ
ନୟାଗଡ଼

**ଅଗ୍ରଗାମୀ**
ଏନ୍.ଡି.-୮, ଭିଆଇପି ଏରିଆ
ଆଇଆର୍‌ସି ଭିଲେଜ୍
ଭୁବନେଶ୍ୱର



ନିଜ ସମାଜରେ ବିଷର ଚକ୍ରକୁ ପ୍ରତିହତ କର !

ଗୋଷ୍ଠୀକୁ ଉନ୍ନତ କରିବା ପାଇଁ ପଦକ୍ଷେପ ନିଅ !

ମୂଲ୍ୟ: ୬୪.୦୦